# କାବ୍ୟ ବିତାନ

## ସବୁଜରୁ ସାଂପ୍ରତିକ



ଅଧ୍ୟାପକ ଶ୍ରୀ ଦାଶରଥି ଦାସ

ବିଶ୍ୱ ବାଣୀ

କଟକ-୨

# କାବ୍ୟ-ବିତାନ : ସବୁଜରୁ ସାଂପ୍ରତିକ



ପ୍ରକାଶକ :

ବିଶ୍ୱ ବାଣୀ
କଟକ-୨

ମୁଦ୍ରାକର :

ପ୍ରିଣ୍ଟେକ୍ସ
ବାଙ୍କାବଜାର, କଟକ-୨

ପ୍ରଚ୍ଛଦ :

ଅସିତ ମୁଖାର୍ଜୀ
ଶିଳ୍ପରୂପମ୍, କଟକ-୨

ପ୍ରକାଶ କାଳ :

୧୯୭୮
ଗଣେଶ ପୂଜା

ମୂଲ୍ୟ :

ପାଞ୍ଚଟଙ୍କା ମାତ୍ର

KAVYA BITAN : (Modern Poetry Collection),
Edited by : Prof, Dasarathi Das,
Published by : Biwsa Bani, Cuttack-2.

# ବିଷୟ ସୂଚୀ



## ସଙ୍କଳନ ସମ୍ପର୍କରେ—

ଆଧୁନିକ ଓଡ଼ିଆ କବିତାର ନିରନ୍ତର ଅଗ୍ରସରଣଶୀଳତା ତା'ର ପ୍ରତିନିଧିସ୍ଥାନୀୟ କାବ୍ୟ ସଙ୍କଳନଟିଏ ପ୍ରସ୍ତୁତ କରିବା କ୍ଷେତ୍ରରେ ସବୁଠାରୁ ବଳ ବଡ଼ ଅନ୍ତରାୟ । କୌଣସି ସଙ୍କଳନ କେବେ ସବୁ କବିଙ୍କୁ ଅନ୍ତର୍ଭୁକ୍ତ କରିପାରେ ନାହିଁ, କି ସବୁଶ୍ରେଣୀର ପାଠକଙ୍କ ରୁଚିରୋଚକ ହୋଇପାରେ ନାହିଁ । ତଥାପି କାବ୍ୟ-ସଙ୍କଳନ ପ୍ରସ୍ତୁତ କରିବାକୁ ହୁଏ । କବିତାଗ୍ରନ୍ଥ ବାହୁଲ୍ୟ ଯୁଗରେ ସଙ୍କଳନ ଗ୍ରନ୍ଥ ଅପରିହାର୍ଯ୍ୟ । ଆମେ ସଙ୍କଳନଟିର ନାମ ରଖିଛୁ, "କାବ୍ୟବିତାନ : ସବୁଜରୁ ସାମ୍ପ୍ରତିକ ।" 'ସବୁଜରୁ ସାମ୍ପ୍ରତିକ'—ଅଧ୍ୟାୟରେ ଯେଉଁ ବରେଣ୍ୟ କବିବୃନ୍ଦ କାବ୍ୟରଚନାରେ ନିରତ ଅଛନ୍ତି, ସଙ୍କଳନଟିର ଆୟତନ ବୃଦ୍ଧି ଆଶଙ୍କାରୁ ସେ ସମସ୍ତଙ୍କୁ ମଧ୍ୟ ସ୍ଥାନ ଦେଇ ହୋଇ ନାହିଁ । ପ୍ରକୃତରେ ଏହି ବିଂଶ ଶତାବ୍ଦୀରେ ଭୂମିଷ୍ଠ ହୋଇଥିବା କବିମାନଙ୍କ କବିତା ଏଥିରେ ସଂଗ୍ରହ କରାଯାଇଛି । ଫଳତଃ ଶ୍ରୀ ଗୋଦାବରୀଶ ମହାପାତ୍ର ଓ ଶ୍ରୀମତୀ କୁନ୍ତଳାକୁମାରୀ ସାବତଙ୍କ କବିତା ସଙ୍କଳିତ ହୋଇପାରି ନାହିଁ । ସେ ଦୁହିଁଙ୍କ କବିତା ସଙ୍କଳିତ ହୋଇଥିଲେ ଗ୍ରନ୍ଥଟିର ସୌନ୍ଦର୍ଯ୍ୟ ବଢ଼ିଥାନ୍ତା ନିଶ୍ଚୟ । କବିତା ନିର୍ବାଚନରେ ଆମେ ଅବଶ୍ୟ ରୁଚିକୁ ପ୍ରଶ୍ରୟ ଦେଇଛୁ । ରୁଚି ପରିବର୍ତ୍ତନଶୀଳ । ଏହି ମୁହୂର୍ତ୍ତରେ ଯେଉଁ କବିତା ଜଣଙ୍କୁ ଭଲ ଲାଗୁଛି, ତାହାକୁ ସେ ପର ମୁହୂର୍ତ୍ତରେ ପରିତ୍ୟାଗ କରି ପାରନ୍ତି । ଗ୍ରନ୍ଥ ମୁଦ୍ରିତ ହେବାପରେ କୌଣସି କୌଣସି କବିତା ବଦଳରେ ଅନ୍ୟ କବିତା ସଂଗ୍ରହ କରିଥିଲେ ଭଲ ହୋଇଥାନ୍ତା ବୋଲି ଆମେ ମଧ୍ୟ ଭାବୁଛୁ । ଏପରି କ୍ଷେତ୍ରରେ ଆମ ରୁଚିକୁ ଯେ ସମସ୍ତେ ସ୍ୱୀକାର କରିବେ, ଏପରି ପ୍ରତ୍ୟାଶା ରଖୁନାହୁଁ । ତେବେ ଆମେ ଭଲ କବିତା ସଂଗ୍ରହ କରିବାକୁ ଉଦ୍ୟମ କରିଛୁ । କବିତାକୁ ମଧ୍ୟ କବିତା ଭାବରେ ହିଁ ବିଚାର କରାଯାଇଛି । ଆମର ଜ୍ଞାନବୁଦ୍ଧି ଓ ରମ୍ୟବୋଧ ଅନୁଯାୟୀ ସର୍ବତ୍ର ଯେ କବିତା ବଛା ଯାଇଛି ଏହା ନିଃସନ୍ଦେହ । ପ୍ରକୃତରେ କବିତାର ନିଜସ୍ୱ ମୂଲ୍ୟ ହିଁ ଆମ ପାଖରେ ଏକମାତ୍ର ସତ୍ୟ ।

କବିତାର ଇତିହାସ ତା'ର ଟେକ୍‌ନିକ୍‌ର ହିଁ ଇତିହାସ । ପ୍ରତି ଯୁଗରେ କବିତା ତା'ର ଟେକ୍‌ନିକ୍ ବଦଳାଏ । ପ୍ରତ୍ୟେକ ଯୁଗକୁ ତା'ର ନିଜସ୍ୱ ରୁଚି, ମନନ ଓ ସୌନ୍ଦର୍ଯ୍ୟବୋଧ ଅନୁଯାୟୀ ନୂଆ ଶୈଳୀ ଓ କାବ୍ୟପ୍ରକରଣ ସୃଷ୍ଟି କରିବାକୁ ହୁଏ । ନିଷ୍ଠାପର କବିମାନେ ସମକାଳୀନ ହେବାକୁ ଚାହାନ୍ତି । ସବୁଜ ଯୁଗଠାରୁ ସାମ୍ପ୍ରତିକ କାଳପର୍ଯ୍ୟନ୍ତ ଓଡ଼ିଆ କବିତା ତିନିଥର ଶୈଳୀ ଓ ପ୍ରକରଣ

ବଦଳାଇଛୁ । ଓଡ଼ିଆ କବିତାରେ ତିନୋଟି ବିଭିନ୍ନ ସ୍ୱର ସ୍ୱାଦର କାବ୍ୟଚେତନା ଜନ୍ମ ନେଇଛି । ଆମେ ସେହି ତିନୋଟି କାବ୍ୟଚେତନାକୁ ଏଥିରେ ଆନୁକ୍ରମିକ ସନ୍ନିବିଷ୍ଟ କରିଛୁ । ସେଗୁଡ଼ିକ ହେଲା : ସବୁଜ କାବ୍ୟଚେତନା, ପ୍ରଗତିବାଦୀ କାବ୍ୟଚେତନା ଓ ଆଧୁନିକ କାବ୍ୟଚେତନା । ତେଣୁ ଆନୁକ୍ରମିକ କବିତାଗୁଡ଼ିକୁ ପଢ଼ିଲେ ଯେ କେହି ଓଡ଼ିଆ କବିତାର ପ୍ରକରଣ ବୈଚିତ୍ର୍ୟ ମଧ୍ୟ ଏଥିରୁ ଲକ୍ଷ୍ୟ କରି ପାରିବେ । ଆମର ଅନେକ କବି କାବ୍ୟଚେତନାର ବିଭିନ୍ନ ପର୍ଯ୍ୟାୟ ଅତିକ୍ରମ କରି ଆମ ପାଖରେ ପହଞ୍ଚିଛନ୍ତି । ତେଣୁ କବିତାରୁ କବିଙ୍କ କାବ୍ୟଚେତନାର ପର୍ଯ୍ୟାୟ ବିଚାର କରିବାକୁ ହେବ । ସଙ୍କଳିତ କବିତା ଯେଉଁ କାବ୍ୟଚେତନାର ଫଳଶ୍ରୁତି, କବିଙ୍କୁ ସେଠାରେ ସେହି ଚେତନାର କବି ବୋଲି ଗ୍ରହଣ କରିବାକୁ ହେବ । ଅନ୍ୟଥା ଭୁଲ୍ ବୁଝାମଣା ରହିଯିବ ।

ସଙ୍କଳନଟିରେ ଯେଉଁ ବରେଣ୍ୟ କବିମାନଙ୍କର କବିତା ସଂଗୃହୀତ, ସେମାନଙ୍କୁ ସଙ୍କଳକ ତା'ର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ଏହାର ସାଫଲ୍ୟ ଓ ସାର୍ଥକତା ମଧ୍ୟ ସେହିସବୁ କବିଙ୍କର ପ୍ରାପ୍ୟ ହେଉ ।

ଗଣେଶ ଚତୁର୍ଥୀ
୬ । ୯ । ୭୮

ସଙ୍କଳକ

# ଲୋହିତ ବ୍ୟଥା

କାଳିନ୍ଦୀଚରଣ ପାଣିଗ୍ରାହୀ



ବଂଶୀ କାନ୍ଦିଗଲା ଦୂର ନୀଳ ବନ ପଥେ,
ସ୍ୱର ରହିଗଲା          ଏ ମୋର ମରମଗତେ
ଦୂର ଅତୀତର ଶୁଣିଥିଲା ଭାଷା
କି ଗହନ ବ୍ୟଥା ଦୁରନ୍ତ ଦୁରାଶା,
ସନ୍ଧ୍ୟା ସୁନ୍ଦରୀ ସ୍ୱର୍ଣ୍ଣ ମେଘର ରଥେ
ସଜଳ ନୟନେ ଚାହିଁଥିଲା ବନପଥେ ।

ପଡ଼ନ୍ତ ଶୀତର ନିବିଡ଼ ବେଦନା ପରେ
ନିମେଷ-ବସନ୍ତ          ବାନ୍ଧିଥିଲା କେବେ ଥରେ,
କେବେ ଜୋଛନାର ସଲଜ ପରଶେ
ପ୍ରାଣ ଉଠିଥିଲା ପୁଲକ ହରଷେ,
କେବେ କେଉଁଦିନ ଗୋଧୂଳି ଆଲୋକ ପରେ
ହଳିଆର ଗୀତ ଭାସି ଆସିଥିଲା ଘରେ ।

କେବେ ନଦୀକୋଳେ କହି ତା ବ୍ୟଥିତ ବାଣୀ
ରକତ ଚୁମ୍ବନ          ରଖିଥିଲା ସନ୍ଧ୍ୟାରାଣୀ
ଏକାକୀ ନାଉରି ସଙ୍ଗୀତ ଶୋକେ
ନାବ ବାହୁଥିଲା ଲୋହିତ ଆଲୋକେ,
ଉପରେ ତାହାର ସନ୍ଧ୍ୟା ସରମ ଠାଣି
ତଳେ ଜଳରାଶି-ପୀଡ଼ିତ-ମରମବାଣୀ ।

ଫାଟି ପଡ଼ିଥିଲା ଗୋଲାପୀ ଅନ୍ତର କା'ର,
ସେ ବ୍ୟଥା ପରଶେ          ତ୍ରିଭୁବନ ନାରଖାର,
ଲୋହିତ ସେ ବ୍ୟଥା ଭାସଇ ପବନେ,
ଅରୁଣ ରାଗିଣୀ ଗଗନେ ଗଗନେ,
ସେ ବ୍ୟଥା ଏ ପ୍ରାଣେ ଉଠାଇଛି ହାହାକାର
ସକଳ ଅଙ୍ଗେ ମୋ ରକତ ଚୁମ୍ବ ତାର ।

॥ ୨ ॥

ଅନ୍ତରେ ରକତ ବାହାରେ ରକତରଣି,
ରକତର ଶିଶୁ କାନ୍ଦେ        ଯିବ ମୁଁ ଗୋ ଭାସି,
କି ବାରତା ଆସେ କାନ୍ଦି ସେ ଝଙ୍କାରେ,
କ୍ଷୀଣତର ହୋଇ ମରମେ ସଞ୍ଚରେ,
କି ପୁଲକ ବ୍ୟଥା ପରଶେ ଲଗେ ଧରଷି
ରଙ୍ଗାଏ ମୋର ସଞ୍ଚିତ ବ୍ୟଥାରଣି ।

ସେ କିବା ମୋହର ପ୍ରଥମ ଆଲୋକ କଥା
ଅନନ୍ତ ଯୁଗର        ଆଦିମ ଏକ ବାରତା,
ପ୍ରାଚୀନତମ ସେ ପ୍ରାଣର ପରାସ
ଅସୀମ କାଳର ଏକ ଇତିହାସ,
ଅତଳୁ ଅତଳେ କାନ୍ଦି ଲୁଟନ୍ତୁ ସେ ବ୍ୟଥା
ସନ୍ଧ୍ୟା ଗଗନେ ଶୁଣିଲି ଆଜି ସେ କଥା ।



# ସାଧନା

କାଳିନ୍ଦୀଚରଣ ପାଣିଗ୍ରାହୀ



ମୁଗ୍‌ଧ ତୋର ଗୃହାଣୀରେ
ଦିଶିବ ସୁନ୍ଦର ବୋଲି
ନଗ୍ନି-ଦନ ସାଜଇ ମୋ ଦେହ
ନୁହଇ ଭୋଗ-ବାସନା
ଗଢ଼େ ମୋର ପ୍ରାଣ ମନ
ତୋର, ପ୍ରିୟେ, ନବଡ଼ ସେନେହ ।
ମୋର ହାସ୍ୟ ଦେଖିବାକୁ
ତୋତେ ଯେଣୁ ଲାଗେ ବଡ଼ ଭଲ,
ହସେଁ ଅତ କଷ୍ଟେ ମୁଁ ଯେ
ବେଦନା-କାତର ଅନ୍ତସ୍ଥଳ !

ଏ ଧରାର ଶତ ପ୍ରବଞ୍ଚନା
ଶତ କ୍ଳେଶ ସହସ୍ର ଲାଞ୍ଛନା
ତୋ ଲାଗି ଘୋଡ଼ାଇ ରଖେଁ
ସଦା ଲୋକନେତ୍ର-ଅନ୍ତରାଳେ,
ହୃଦୟର କ୍ଷତରକ୍ତ ଝରେ
ଯାହା ସନ୍ଧ୍ୟା ସକାଳେ !

ରକ୍ତର ଅରୁଣ ରାଗ ସମ
କରୁଣ ବାସନାରାଶି ମମ
ତୋଷିବାକୁ ତୋରେ ସବୁ ଭୁଲିଯାଏଁ
ଆଗୋ ପ୍ରିୟତମ !

ତୋ ପୁଣ୍ୟ ଅଧର ଏ ମୋ ନୟନେ
ଲାଗିବ ବୋଲି
ପୋଛି ଦିଏଁ ତହୁଁ ଅଶ୍ରୁଧାର,
ଅନ୍ତର ଉଚ୍ଛୁଳି ଯାହା ନ ମାନଇ ବାଧା ବନ୍ଧ
ନ ମାନଇ କିଛି ପ୍ରତିକାର ।

॥ ୪ ॥

ଏ ଭାଲେ ଲାଗିବ ବୋଲି ତୋ ଧନୁ ଭ୍ରୂଲତା
ପୋଛି ଦଏଁ ତହୁଁ ଶତ ବିଷାଦ ବାରତା ।

ମୁହୁ ମୁହୁ ହୃଦର କମ୍ପନ
ଅତି କଷ୍ଟେ କରଇଁ ଗୋପନ,
କୋମଳ ତୋ ବକ୍ଷଦେଶେ ଲାଗିଲେ ସେ
ଦେବ କାଳେ ବ୍ୟଥା !
ସଯତ୍ନ କରଇଁ ସବୁ ନ ହେବାର
ଯାହା ଲୋ ଅନ୍ୟଥା ।

ଧରାର କାଠିନ୍ୟେ ଅଙ୍ଗ ମୋର
ହୋଇଛି ଲୋ ଅତୀବ କଠୋର
ତରଳ ତୋ ତନୁ, ପ୍ରିୟେ, ଲୋଡ଼େ ତେଣୁ
ତାହାର ପରଶ,
ଯତନ ସୋହାଗେ ମୁଁ ଯେ ମାଜି ତାରେ
କରଇଁ ସରସ ।

ଯଶ ଖ୍ୟାତି ଧନ ମାନ ଆଦି
ତୋ ଲାଗି ମୁଁ ରଖଇଁ ସମ୍ପାଦି,
ତୋଷିବାକୁ ତୋରେ, ପ୍ରିୟେ, କରଇ ମୁଁ
ଏ ଜୀବନେ ପ୍ରାଣାନ୍ତ ସାଧନା,
ତୋ ପ୍ରେମର ଆରାଧନେ ବହେଁ ମହାସୁଖେ
ମୁଁ ଯେ ଦୁଃସହ ବେଦନା !

ଏ ନୁହଇ ତ୍ୟାଗର ଗରବ,
ତୁ ଯେ ମୋର ଅଟୁ ଲୋ ସରବ;
ତୋର ଲାଗି ଏ ଭୁବନେ ପାରେଁ
ଅକାତରେ ସବୁ କର,
ବିଶ୍ୱର ଜଞ୍ଜାଳରାଶି ତୋର ସ୍ନେହେ
ନେବଇଁ ଆଦର ।

ତୋର ଲାଗି ତେଣୁ ଲୋ ପ୍ରେୟସି,
ଉଦେ ମୋର ଚିର ସୁଖ-ଶଶୀ;

॥ ୬ ॥

ତୋର ଲାଗି ଦୁଇଗୁଣ ଭଲ ଲାଗେ
କୋକିଳର ମଧୁର ପଞ୍ଚମ,
କେତକୀ ସୁବାସେ ମୋର ମୁଣ୍ଡ ଉଠେ
ହାହାକାରେ ବ୍ୟଥିତ ମରମ !

ତୋ ଲାଗି ମୋ ଧୀରର ଜୋଛନା
ଅନୁରାଗଦୋଳା ମୋ ବାସନା
କ୍ଷଣେ କ୍ଷଣେ ପଥେ ପଥେ ବନେ ବନେ
ଉଠଇ ଲୋ ବାଜି,
ବନ୍ଧୁର ଏ ଧରାପଥେ ଚାଲିବାକୁ
ଭଲ ଲାଗେ ଆଜି ।

ମନେ ଅଛି ଥିଲା ଦୁରୁବନ୍ତ
ଯବେ ଏ ଜୀବନ ଗୋଷ୍ଠୀ ମୋହ,
ବଞ୍ଚିଛୁ ମରିଛୁ କିବା ଯବେ ତାହା
ନ ଥିଲି ତ ଜାଣି,
ଗୀତ ଗନ୍ଧ ସ୍ପର୍ଶ ସ୍ୱାଦ ନ ଥିଲା
ତୃପ୍ତି ରେ ପ୍ରାଣରାଣୀ !

ଆଜି ଏତେ ପ୍ରାଣ ଦେଲା କିଏ,
ଏତେ ତେଜ ଇନ୍ଦ୍ରିୟେ ଇନ୍ଦ୍ରିୟେ,
ଏତେ ଆଶା ଏ ଆକାଂକ୍ଷା ଏ ବିପୁଳ
ଜୀବନ ପରଶ,
ରୁନ୍ଧୁ ସଞ୍ଚାରିଛୁ ହୃଦେ ଏତେ ପ୍ରେମ
ପୁଲକ ହରଷ ।
ଆକାଶ ଭୁବନ ବସୁନ୍ଧରା
ତୋ ଲାଗି ସେ ମୋ ପ୍ରେମ-ପସରା,
ତୁ ଯହିଁ ନାହୁଁ ଲୋ ପ୍ରିୟେ, ନାହିଁ କିଛି
ନାହିଁ ନାହିଁ ଏ ଆକାଶଭୁଇଁ,
ଶୂନ୍ୟ ସବୁ ଚରାଚର, ନାହିଁ ନାହିଁ କିଛି ଏଥି,
ନାହିଁ ଜଗେ ମୁହିଁ !



# ସେରିନେଡ୍

ବୈକୁଣ୍ଠନାଥ ପଟ୍ଟନାୟକ



ଗନ୍ଧ ଯେସନେ ମଳୟ ସମୀରେ ମିଶେ,
ତଟିନୀ ଯେସନେ ସାଗରକୁ ଯାଏ ବନ୍ଧୁ
ଯେସନେ ଜୋଛନା ଶ୍ୟାମ ପ୍ରାନ୍ତରେ ମିଶେ
ଭ୍ରମର ପରାଣେ ମିଶିଯିବ ଆଜି ସନ୍ଧ୍ୟା ।

ପିଇବ ସେ ରୂପ ଲୁବ୍ଧ ଚକୋର ସମ
ଗୁହିଁବ ନୟନେ ଅରୂପଟି ଯହିଁ ଫୁଟେ,
କାନ୍ତ ଆଜି ଗୋ ନିରାଶ ପରାଣ ମମ
ଦୂରେ ତୁମ ଆଣେ ସମୀରଣ ସମ ଛୁଟେ ।

ଫେଡ଼ିଦିଅ ସନ୍ଧ୍ୟା ପରାଣଦୁଆର ତୋର
ସରମଜଡ଼ିତ ଆକୁଳ ନୟନ ଖୋଲି,
ଡାକ ପ୍ରିୟଜନେ,—ମୁଁ ନୁହେଁ ପରାଣ-ଚୋର
କାନ୍ତ ଭିକ୍ଷୁ ଯାଏ ମୋର ଗୀତ ବୋଲି ।

ଲଭିଛି ଜୀବନେ ଭ୍ରାନ୍ତ ମରଣ ପୀଡ଼ା,
ରୁଧିରାପ୍ଲୁତ ସୈନିକ ତହୁଁ ଜଣେ
ବରଜି ଆସିଛି କାଳର ବିପୁଳ କ୍ରୀଡ଼ା
ଅମର ହେବାକୁ ତୋର ଅନ୍ତର-ଧନେ ।



# ଶେଷଗୀତ

ବୈକୁଣ୍ଠନାଥ ପଟ୍ଟନାୟକ



ଜୀବନପାତ୍ର ମୋ ଭରିଛ କେମନ୍ତେ ନ ଦେଲ କିଛି ବୋଲି
କହିବି କି ହେ ଆଉ,
ଜୀବନ ପ୍ରିୟତମ ହରିଛ ମୋ ଭରମ-ତରଣୀ ମୋର ତବ
ସାଗରେ ବହିଯାଉ ।
କୂଳର ଜନ ଯାଣୀ କେତେ ମିଳାଅ ଆଣି,
ନୟନ ପଲକରେ ଲୁଚିଅ ଜାଣି ଜାଣି,
ବୃଥା ମୁଁ ଅଭିମାନୀ ହୃଦେ ଧରିଛି ଟାଣି ମରତପ୍ରବାସୀ ମୁଁ
ନ ଜାଣି ଏଣେ ଧାଉ;
ତରଣୀ ମୋର ତବ ସାଗରେ ବହିଯାଉ । ୧ ।

ମାନସହଂସ ମୁଁ ମାନସେ ଯିବି ଉଡ଼ି ମୋ ଦୋଷେ ପଥ ହୁଡ଼ି
ଭରମେ ଅବିରତ,
ଅଲପ ତୃଷା କ୍ଷୁଧା ଲଭି ଭ୍ରମରି ସୁଧା ତୃପତ ହେଲି ତେବେ
ଲୋଡ଼ଇ ଏ ମରତ ।
ନାନା ବାସନାଜାଲେ ବିକଳ ବିଧୁତ,
ତମିରଅଙ୍କାନେ ମିଳେ କି ଅମୃତ ?
ଛାଡ଼ିବି ଦୂରେ ଯିବି ପାରିବାରେ ଭାସିବି ଲଙ୍ଘି ହିମଗିରି
ଯିବି ଗୋ ବେଳ ଥାଉଁ ।
ତରଣୀ ମୋର ତବ ସାଗରେ ବହିଯାଉ । ୨ ।

ଦେଇଛ ପ୍ରିୟପ୍ରାଣେ ଅମର ପ୍ରୀତି ଭରି ମୋ ଶିଶୁ କନ୍ଦନେ
ଅମର ମୋର ଆଶା,
ପ୍ରଭାତ ସନ୍ଧ୍ୟାରେ ଖେଳାଇ ରୂପଢେଉ ବିକଳ କଣ୍ଠେ ମୋ
ଫୁଟାଇଛ ତ ଭାଷା,
ଗାଇବି ବନ୍ଦି ମୁଁ ଚରଣ ବନ୍ଦନା,
ସେଲାଗି ଏ ବୀଣାରେ ଦେଇଛ ମୂର୍ଚ୍ଛନା,

॥ ୮ ॥

ସେ ସୁଖ କଣ ହେଲା ଲଗାଇଲି ମୁଁ ଖେଳା ମିଳନ ମଧୁରାତ
ପାହିଲି ଚାହୁଁ ଚାହୁଁ,
ମିଥ୍ୟା-ସ୍ୱପଣୀରେ ବଣିକ ମରଣ ଯେ ନ ଚେତ ତଲେ ଯାହା
କଲି ମୋ ମଣି ଖାଉ । ୩ ।

ପଉଷ ତରୁ ମୁଁ ଗୋ ପଳାତ ମୋ ପତର ନିରାଶା ପରଶରେ
ଝରିଛି ଅକାଳରେ,
ନାହିଁ ତ ନେବେ ତଲେ ଶୋଚନା ଖେଦ ମୋର ମୋ ମଣି
ମୋ ହୃଦୟ
ସାଗର ଅତଳ ରେ,
ପରାଣ କୁଞ୍ଜେ ମୋ ତାର ମୁରଲି ଧ୍ୱନି,
ପରାଣ ପବନେ ମୋ ତା ଶୁଭ ଆଗମନୀ,
ଜୀବନେ ଦେବା ନେବା ଭିଆଣ ସବୁ ତାର ସେ ମହାଦାନୀ ହସେ
ପରାଣେ ଦେଖି ନାହୁଁ ?
ତା ପରଶେ ପଉଷ ଜୀର୍ଣ୍ଣ ଜୀବତରୁ ପଲ୍ଲବତ ଆହା
ଶୋଚନା କିବା ଆଉ ? ୪ ।

ଚାଲ ରେ ଚାଲ ମନ ନିତ୍ୟ ବୃନ୍ଦାବନ ଦେଖିବୁ ପ୍ରିୟ ରାସ
ଅଦୂରେ ଗୋଲକରେ,
ଅଦୂର ପଥେ ଆଜି ମିଳନ ତାର ସାଥେ ବିଜୟ ରଥେ ତୋର
ଜୀବନ ଆଲୋକରେ,
ଯାତ୍ରୀ ପଥ ତୋର ପଲକେ ହେବ ଶେଷ,
ଶେଷରେ ସନ୍ଦେହ ସକଳ ତୋର କ୍ଲେଶ,
ଧନ୍ୟ ହେବୁ ଆଜି ପୁଣ୍ୟ ଦରଶନେ ଛୁଣ୍ଡି ସବୁ ପାପ
ଦୁଷ୍କୃତର ରାହୁ
ଜୀବନ-ଦେବତା ମୋ' ଜୀବନ ପଥେ ବିଜେ ତରଣୀ ମୋର ତାର
ସାଗରେ ବହିଯାଉ । ୫ ।



# ସବୁଜ ପରୀ

ଅନ୍ନଦାଶଙ୍କର ରାୟ



ସବୁଜ ପରୀ, ଆସ
          ପଦ୍ମ ରଙ୍ଗେ କାନ ଢେଉ
          ଊର୍ଦ୍ଧ୍ୱେ ସ୍ବର୍ଣ୍ଣେ ଘାସ ।

ଶୀତ ଗଲା ବନେ ବନେ ପଲ୍ଲବ ଝଡ଼ାଇ
ଉତ୍ତର ପବନେ ତାର ଉତ୍ତରୀ ଉଡ଼ାଇ
ଦଗେ ଦଗେ ସଞ୍ଚରଲା ଶୁଷ୍କ ତାର ଶ୍ୱାସ ।
                    ସବୁଜ ପରୀ, ଆସ ।
ଯୌବନର ମନ୍ତ୍ରେ, ସଖି, ଜୀର୍ଣ୍ଣ ଜରା ନାଶ ।
ସବୁଜ ପରୀ ଆସ !
          ପଲ୍ଲବାଅ ତରୁ-ବକ୍ଷ
          ମୁଞ୍ଜରାଅ ଘାସ ।
ଛୁଇଁଯାଅ ବେଣୁବନେ ଚୁମ୍ବିଯାଅ ଚୂତେ
ପାଂଶୁମୁଖ ଶ୍ୟାମ ହେଉ ଅଧର ଅମୃତେ,
ନଗ୍ନ ଧରା-ଅଙ୍ଗେ ଦଅ ଦୀପ୍ତ ଶ୍ୟାମ ବାସ
                    ସବୁଜ ପରୀ, ଆସ ।
ମୌନ ଧରାମୁଖେ ଦଅ ଯୌବନର ହାସ ।



# ଯଉବନ ଥରେ ଗଲେ ଆଉ ଆସେ ନା !

ଅନ୍ନଦାଶଙ୍କର ରାୟ



( ୧ )

ଆହା ଯଉବନ ଥରେ ଗଲେ
ଆଉ ଆସେ ନା !
ବୃଥା ବଧୂର ପରାଣପୁରେ
ଝୁରେ ବାସନା ।
ଫୁଲ ଫୁଟେ ଫୁଲ ଝଡ଼େ
ପୁଣି ଫୁଟେ ସେ,
ପୂରନମା ଶଶୀ ବୁଡ଼େ
ପୁଣି ଉଠେ ସେ !
ବରଷକେ ଆସେ ପୁଣି
ମଧୁ-ଚଇତ
ବିରହିଣୀ ଧରଣୀର
ପ୍ରାଣଦୟିତ ।
ମାତର ନ ଆସେ ଫେରି
ଯଉବନ ଗୋ,
ବାହୁଡ଼ଇ ନାହିଁ ଗୋପେ
ଗୋପଧନ ଗୋ !
ନ ଫେରଇ ଥର-ଥର
ସ୍ନେହ ଗୁହାଣି,
ନ ଫେରଇ ଛନ-ଛନ
ମନ କାହାଣୀ,
ପରଥମ ପ୍ରଣୟ ଗୋ
ସରମରଙ୍ଗା,
ବିରହ ଦୀରଘଶ୍ୱାସ
ମରମଭଙ୍ଗା,

॥ ୧୧ ॥

ସୁଖର ବେଦନା ମୋର
ନୀରବ ପୀଡ଼,
ନ ଫେରନ୍ତ କଣ୍ଠେ ଗୋ
ତା ମଧୁଗୀତ !
ଅଧର ଅଳକ ଆଖି
ଆଉ ହସେ ନା,
ଆହା, ଯଉବନ ଥରେ ଗଲେ
ଆଉ ଆସେ ନା !

( ୨ )

ଶ୍ରେଷ୍ଠ ଏ ଜୀବନ ବୋଲି
ଦୁଃଖ ନାହିଁ ତ,
ଯଉବନ ବନ୍ଧନେ ମୋ
ସୁଖ ନାହିଁ ତ !
ଦ୍ରୁମ ନ ହେଉଣୁ ଗାଲେ
ତପତ ତ୍ରମ,
ବାସି ନ ହେଉଣୁ ଗଲେ
ସଜ କୁସୁମ,
ଯଉବନ ସାଥେ ଯାଉ
ଜୀବନ ମୋର,
ଜରା-ସ୍ନେହର ସାଥେ ଆସୁ
ମରଣ ସ୍ନେହ ।
ଫୁଲ ଝଡ଼େ, ଫୁଲ ଫୁଟେ
କାନ୍ଦେ ନା ବନ,
ଶଶୀ ବୁଡ଼େ, ଶଶୀ ଉଠେ—
ସହେ ଗଗନ,
ମଧୁଋତୁ ଯାଏ ଆସେ
ଲୁଚ ନ ରହେ;
ଅବନୀ ଉଦାସୀ ହେବ
କାହା ବିରହେ ?

॥ ୧୨ ॥

ଲୁଚକାଳି ଖେଳେ ଭବେ

ସବୁ ସୁଷମା

ହୋଇ ହାନ୍ତ ଧରଧର ନାଚେ

ଆଲୋକ ଅମା ।

ଜଗତେ ହଜେ ନା କିଛୁ,

ହଜେ ଜୀବନେ,

ବାହାରେ ବେଦନା ନାହିଁ,

ବେଦନା ମନେ ।

ବୃଥା ବଧୂର ପରାଣ ପୁରେ

ଝୁରେ ବାସନା,

ଆହା ଯଉବନ ଥରେ ଗଲେ

ଆଉ ଆସେ ନା ।



# ଫେରାଇ ଦିଅ

ମାୟାଧର ମାନସିଂହ



ଫେରାଇ ଦିଅ, ଫେରାଇ ଦିଅ
ସ୍ୱପ୍ନ ସରସ କିଶୋର ବୟସ
ମଧୁର ସେଦିନ
ପୀରତି-ପ୍ରିୟ !

ଜୀବନ-ପ୍ରଭାତେ ମାଗୁଥିଲି ଯାହା
ନୟନ-ଜଳେ,
ପ୍ରାଣର ସେ ମଗା ଏବେ ବି ଜାଗଇ
ମର୍ମତଳେ ।
ଶୁଣି, ଶୁଣି ନାହିଁ ବିକଳ ଯାଚନା,
ପଥ-ମଗା ଲୋକେ କଲି ପଥ-ବଣା
ବ୍ୟର୍ଥ, ବିପଥ, ବିକଳ, ମିଥ୍ୟା
କରାଇଲ ମୋର ଜୀବନ-ଦିଅଁ,
ଭୁବନ-ଦେବତା,
ଅଲୋଡ଼ା ଏସବୁ
ନିଅ ହେ ନିଅ ।

ନବ କିଶଲୟ ଗନ୍ଧପାଗଳ ଭ୍ରମର ପରି
ନୂଆ ଜୀବନର ମାଦକେ ନାଚିଲି ଚିତ୍ତ ଭରି,
ଉନ୍ମନେ ବୁଲୁଥିଲି ଏ ଧରଣୀ,
ଅନୁଭବମୟ ତରୁଣ ଧମନୀ,
ମାଟିର ଏ ଧରା ଦିଶୁଥିଲା ସତେ
କି କମନୀୟ,
ସେଇ କାଳ ସତେ ଫେରାଇ ଦିଅ ।

ବାଟେ ନବଫୁଟା ରୂପକୁସୁମର ମାଳାଟି ଧରି
ଏକ ସେ କିଶୋରୀ ଭେଟୁଁ ପାଦ ଅଉ ନ ପାରେ ଚଳି,

ଉଭୟର ଆଖେ ସରମର ଘୋର
ଦୁଇ ଓଠେ ମୃଦୁ ସ୍ମିତର ଜୁଆର,
ବିନା ବଚନରେ ଅପରିଚିତରେ
କେ କଲା ପ୍ରଣୟେ
ବନ୍ଧ-ହୃଦୟ !
ହେ ଜୀବନ-ନାଥ,
ପ୍ରଣୟର ସେହି
ମଧୁ ଆଗ୍ରହ
ଫେରାଇ ଦିଅ ।

ସେଦିନୁଁ ଯାଇଛୁ ଯେତେକାଳ ଏବେ ବୁହାଇ ଲୁହ
ଜୀବନର ଦାନେ, ଲାଜେ ବିଦ୍ରୋହେ ନଉଁଛୁ ମୁହଁ,
ମାଟି କୁଟାପାଇଁ କି ଯେ ତକରାଳ,
ତୁଚ୍ଛପାଇଁରେ କିବା ଜଞ୍ଜାଳ,
କଅଁଳ କାଳର ମରମ-ପିପାସା
ଦୟାରେ ଯେଣୁ ଅଚଳନୀୟ,
ହେ ନାଥ, ସେଦିନ ବସନ୍ତ ଦିନ
ଆଜି ନିସବୁଜ
ରୁକ୍ଷ ହିଅ ।

ପ୍ରାଣର ଦେବତା ନିଃଶେଷେ ସବୁ ନିଅ ହେ ନିଅ,
ଲୋକ-ଲୋଚନରେ ଯା କିଛୁ ଶ୍ରେଷ୍ଠ, ଶଂସନୀୟ,
ଦିଅ ପୁଣି ଖାଲି ସେଇ କୈଶୋର
ନବ-ଜୀବନର-ସ୍ୱପ୍ନ-ବିଭୋର,
ରସ ଉଚ୍ଛଳ,
ଲୁହ-ପିଚ୍ଛିଳ
ଅପାପବିଦ୍ଧ,
ସ୍ୱଚ୍ଛ-ହୃଦୟ,
ହେ ନାଥ, ହେ ସଖା,
ସେହି କାଳ ଥରେ
ଫେରାଇ ଦିଅ ।



# ଧରାବତରଣ

ମାୟାଧର ମାନସିଂହ



ପରିଣୟ-ପୀଠ ପରେ ସ୍ମେର-ଚକ୍ଷୁ ବିସ୍ମିତ-ମିଳନ,
ପ୍ରଥମ ଯୌବନେ ସେ ଯେ ଯେଜ ସ୍ୱପ୍ନ-ରସୋଚ୍ଛଳ ମନ,
ଆଜି ସଖି ମନେପଡ଼େ; ଲାଜେ ଲାଜେ ଟେକ ଉତ୍ସ୍ୱାସ୍ୟ
କଶୋଷ୍ଣ-ନୟନ ଦେଇ ଚାହିଁଥିଲ ଦେଖିବାକୁ ପ୍ରିୟ ।

—୨—

ଆଜି ସଖି ପଡ଼େ ମନେ ଜୀବନର ଶେଷ ଧାପେ ଏଇ,
ଜୀବନର ଅନୁଭୂତି, ଜୀବନର ଯାହା ଦିଆଦେଇ,
ସ୍ମୃତିର ଭଣ୍ଡାରେ ବାଛେ ମହାର୍ଘ ସେ କେଉଁ ଅନୁଭବ
ଯା ପାଇଁ ଇଚ୍ଛି ମୁଁ ପାରେ ପୁଣି ଏହି ଧରାରେ ସମ୍ଭବ ।

—୩—

ଆଜି ସଖି, ମନେ ପଡ଼େ ଜୀବନର ନାନା ଅଭିଜ୍ଞତା,
ନାନା ଭ୍ରାନ୍ତି, ନାନା ଅଶ୍ରୁ, କ୍ଷୁଦ୍ର ନେଇ କେତେ ତିକ୍ତ କଥା,
ଜୀବନ-ସଂଗ୍ରାମେ ଯେତେ ରକ୍ତ-କ୍ଷୟ, ଯେତେ ପରାଜୟ
ସବୁ ସଖି, ପଡ଼େ ମନେ,—ତଥି ଆଜି ଖାଲି ସ୍ମୃତିମୟ ।

—୪—

ବିଚାରଇ କିନ୍ତୁ ସଖି, ଯଉବନେ ପ୍ରଣୟମୟୀରେ
ସେ ଆଦ୍ୟ ଚାହିଁବାପାଇଁ ଆସିଥିଲି ଯେପରି ମନ୍ଥରେ,
ସବୁ ଏ ଜଞ୍ଜାଳ ବରି ନେଇଥିଲି ଜୀବନ-କ୍ଷେତ୍ରର
ମଧୁ ଭୋଗିବାକୁ ଦୁଇ ରସୋଚ୍ଛଳ କଶୋଷ୍ଣ-ନେତ୍ରର ।

—୫—

ଉଚ୍ଛଳ ଜୀବନ ଯେଜ ଯୌବନର ବାସନ୍ତୀ ଦୁଆରେ
ଜୀବନର ଦୋସରକୁ ଭେଟିବାକୁ କମ୍ପିତ ହୃଦ୍ୟାରେ,

॥ ୧୬ ॥

ଜୀବନର ସାର୍ଥକତା ଦେଖିବାକୁ ତାହାର ନୟନେ
ହେ ସଖି, ଆସୁଛି ମୁଁ କି ବାରମ୍ବାର ଏ ମର୍ତ୍ତ୍ୟ ଅୟନେ !

—୬—

ଧନ, ମାନ, ପରିବାର, ଜୀବନର ଆହବେ-ବିଜୟ,
ସବୁ ଆଜି ସ୍ମୃତିତଳେ ହୋଇଯାଏ ଧୀରେ ଧୀରେ ଲୟ,
ସବୁ ଯାଇ ରହିଯାଏ କେବଳ ସେ କେମନ୍ତେ କେଜାଣି
ମୁଗ୍ଧା ଏକ କିଶୋରୀର ଲଜ-ପ୍ରେମ-ମଧୁର କାହାଣୀ ।

—୭—

ନିଷ୍ପାପ ସେ, ସ୍ୱପ୍ନମୟ, ରସମୟ, ବିମଳ ଦି'ଆଖି
ପ୍ରାଣର ଦି' ବାତାୟନ, ଅନ୍ତରର ସତ୍ୟ-ବାର୍ତ୍ତା ସାକ୍ଷୀ,
ପାଇବାକୁ ସେ ଦୁଇର ପରିପୂର୍ଣ୍ଣ ଆତ୍ମ-ସମର୍ପଣ
ହେ ସଖି, କରୁଛି ମୁଁ କି ଜନ୍ମେ ଜନ୍ମେ ଧରାବତରଣ !



# ଇରାନୀ-କିଶୋରୀ

ମାୟାଧର ମାନସିଂହ



ଇରାନୀ କିଶୋରି !
ଗୁଲ୍‌ବଦନ ତବ
ନ ହୁଏ ପାଶୋରି ।

ଭୁଲିବି କିପରି ମୁଁ, ରୂପ କି ହୁଏ ଭୁଲି,
ଅଳସ ରେଖା ରଚେ ବୁକୁରେ ତାର ତୁଳି ।
ତା ଭଙ୍ଗୀ, ସବୁ ଭଙ୍ଗୁଁ
ବଳଇ; ମିଶୁ ମିଶୁ
ନୟନ, ବୁକେ ଯାଏ ପରଶି
ଜାଣ କି ତା ଇରାନୀ ରୂପସୀ ?

ଯୁଗ୍ମ ବେଣୀ ଶୋଭି କନକ ଗଲା ବାନ୍ଧି
ମରଣ ନିଜେ ସନ୍ଧି ରନ୍ଧ୍ରବ କ୍ଷଣେ ଗ୍ରନ୍ଥି,
ଦ୍ରାକ୍ଷା-ସୁକୋମଳ—
ଅଧର, ଟଳମଳ—
ବୟସ ବକ୍ଷେ, ଯାର ପାନ ଗୋ,
ପୀୟୁଷୁଁ ସ୍ୱାଦୁ, ମଧୁ ଘ୍ରାଣ ଗୋ ।

ସେ ବିଷ ହାସ୍ୟ ସଖି, କା' ଓଠେ ଦେଲି ଢାଳି
ଆଶୀଷ ସମ ଭୁଜ କଣ୍ଠେ କା'ର ଝୁଲି ?
କବରୀ ଗୁରୁ ବାସେ
ବୁଡ଼ାଇ ମଧୁ-ରସେ
ପ୍ରଣୟୀ-ବୁକୁ ଦେଲି ମଥାଇ
ସେ ବିଷ-ପାନେ ଚେତା କି ଥାଇ ?

ତୁମର ମୁକ୍ତ ପଥେ ଭାବନା ମୋର ଚଳେ
ଗୁଲ୍‌ର-ଉପବନେ ପ୍ରଳାପ ସନ୍ଧି କରେ,
ମୁଖରି ବୁଲ୍‌ ବୁଲ୍‌
ଝରଣା କୁଲ୍‌ କୁଲ୍‌

ଦ୍ରାକ୍ଷା-ଗୁଚ୍ଛ ଭେଦ ବହଇ,
ଜ୍ୟୋତ୍ସ୍ନା ପୁଣି ହୃଦ ଦହଇ ।

ସେ ମଧୁ-ଉପବନେ ଜ୍ୟୋତ୍ସ୍ନା ରାତେ ବସି
ରସିକ ଯୁବା ଡାକେ ପ୍ରିୟା!ରେ ପରହାସି,
ଗୁଲ୍ ମଧୁର ଦଳେ
କବରୀ ଭରି, କରେ
ସିରାଜ ଧରି ଆସେ ପ୍ରେୟସୀ,
ପୀୟୂଷ ଗଢପଥେ ବରଷି ।

ପ୍ରଣୟ-ସଙ୍ଗୀତ ରସିକ ଯୁବା ଗାଏ
ରୂପସୀ ସଖି ଆସି ସିରାଜ ଢାଳି ଯାଏ,
ଧରଣୀ ରହେ ଦୂରେ,
ଜୀବନ-ନଦୀ କୂଳେ
ସ୍ୱପନ-ପୁରୀ ହୁଏ ରଚନା,
ଜୀବନେ ନାହିଁ ଯହିଁ ଶୋଚନା ।

ଏପରି ଉପବନେ ତୁମେ କି ଆଜି ସଖି,
ପ୍ରଣୟୀ ଗ୍ରନ୍ଥ ପରେ ମୁଗ୍ଧ ମୁଖ ରଖି,
ରୁବାଇୟାତ୍ ଶୁଣି
ପ୍ରିୟକୁ ପୁଣି ପୁଣି
ଗେଲେଇ କହ—"କର ଟୀକା ହେ,
ବୁଝି ମୁଁ ନାହିଁ ପାରେ, ଶିଖା ହେ ।"
ନଗରୁ ନଗରେ ଗୋ ମଳୟ ସମ ବହ
ବେପଥୁ କେତେ ବୁକେ ମୁଜିଛ ଜାଣ ସହ ?
କେତେ ଯେ ଆଖି ଆଶା
କେତେ ଯେ ବୁକୁ ଭଷା,
ବୁଝିକି ପାରିଛ ଗୋ ବାଳିକା,
ଲକ୍ଷ ହୃଦ ମନୋନାୟିକା ?
ଅଜଣା ଦୂରେ ତମେ, ମୁହିଁ ଅପରିଚିତ
ପୂଜାରୀ ସମ ବସି ରଚଇ ସ୍ତୁତି ଗୀତ ।
ଦେଖିଛୁ ଯେ ନୟନେ
ସେ ରୂପ, ସେ ବଦନେ

॥ ୧୯ ॥

ପାଲଟିଥିବ କବି ନିକର
ଗାଇ ସେ ଶୋଭା ମୁଖଚିତ୍ରର !

ପୂଜାରୀ ମାଗେ ନାହିଁ ଦେବତା ପରିଚୟ,
କେବଳ ଆରାଧନେ ତା ସୁଖ ସଞ୍ଚୟ,
ତେଣୁ ଅପରିଚିତ
ବିଦେଶୀ ଗାଏ ଗୀତ,
ତୋ ଲାଗି ବିଦେଶିନୀ କିଶୋରି,
ସେ ରୂପ ନିକ ହୁଏ ପାଶୋରି ?

ନିରତ ଅସ୍ତି ସଖି ! ହୃଦୟେ ଅଛି ଜାଗି,
ସେ ବେଣୀ-ହିଲ୍ଲ ଗନ୍ଧ ହୃଦୟେ ଅଛି ଲାଗି,
କନକ ବାହୁମଣି
ଏ ବୁକେ ଅଛି ଭିଡ଼ି,
ତରଳ କୁବଳୟ-ନୟନ
ବୁକେ ସପନ କରେ ଚୟନ ।

କାହିଁ ଗୋ ଗଲ ସଖି ! ଆଉ ତ ନାହିଁ ଦେଖି,
ଜାଣିଲି ନାହିଁ କିଏ ସେ ଓଠେ ବୋକ ଲେଖି
ସରିଲା ଏ ଜୀବନ
ଖାଲି ଏକ ସ୍ୱପନ,
ଭୁଲିଲି ଏଥି ଯେତେ ଶୋକ ଗୋ,
ଅଧରେ ଲେଖି ଥରେ ବୋକ ଗୋ ।

କାହାର ହେଲ ଅବା କରମଶୀଳା ବଧୂ,
ସମସ୍ତ କଟେ ଗୁରୁ ଶ୍ୱଶୁର ବୋଲ ସାଧୁଁ,
ଘରଣୀପଣ ନିକି
ନେଲଣି ଟିକିଟିକି
ସେକାଳ ସେ କିଶୋରୀ ଲୀଳା ଗୋ,
ଭୁଲିଛ ପର-ବୁକୁ-ଶଯ୍ୟା ଗୋ ।

ଜୀବନେ ଯଦି କେବେ ଦେଖା ବା ହୁଏ ପୁଣି,
ଦେଖିବି ନାହିଁ ମୁଁ ତ ସେ ତରଳ-ତରୁଣୀ,
ଶିଥିଳ ଚର୍ମ ପରେ
ଜରତା ନାଚ କରେ,

॥ ୧୦ ॥

ନୟନେ ମରଣର ଛାୟା ଗୋ !
ବେପଥୁ ଧରଥିବ କାୟା ଗୋ !
ସେ ଛବି କବି ବୁକେ ଆଣିବ ବାଧା ଗୁରୁ,
ଜଗତେର ପ୍ରାଣ ତାର ଜୁହାରେ ନତ ଦୂରୁ,
ତେଣୁ ଗୋ ବଦେଶିନ,
ଘନ-ନୀଳ-କେଶିନ,
ଧବଳ-କେଶେ ଦେଖା ପାଇଁ ମୋ ।
ଥଲେ ହେଁ ଅଭିଳାଷ ନାହିଁ ଗୋ !

ମୋ ପାଇଁ ଥାଅ ଚିର କିଶୋରୀ ସୁନ୍ଦରଳା,
ଅଧରେ ହଳାହଳ ନୟନେ ବାଣ-ଛଡ଼ା,
ଚରଣେ ଚିର ନାଚ
ମରମେ ପ୍ରୀତି-ହାଟ,
ଅଙ୍ଗ ପ୍ରତି ଲୋମେ କଟାର,
ହେ ସଖି ! ମୁଁ ସେ ରୂପ-ଭିଖାରୀ !



# ଆସିଛି ମୁଁ ଆସିଛି

ଅନନ୍ତ ପଟ୍ଟନାୟକ

●

ଆସିଛି ମୁଁ ଆସିଛି !
ଦୁଃଖର ଦୁର୍ଭେଦ୍ୟ ପାଚୀର ଭାଙ୍ଗି
ମୁଁ ଆସିଛି,
କୃମିକୀଟର ଉଲଙ୍ଗ ଉଲ୍ଲାସ ଚିରି
ମୁଁ ଆସିଛି,
ଲଲାଟରେ ଭବିଷ୍ୟତର ଉତ୍‌କୀର୍ଣ୍ଣ ଲିପି ଘେନି
ସ୍ଫୁଲିଙ୍ଗର ତଲୋର୍ମି
ମୁଁ ଆସିଛି,

    ପ୍ରାଣର ଅଧିପ ମୁଁ ସୂର୍ଯ୍ୟ
    ସ୍ନେହର ଦ୍ରବଭୂ ମୁଁ ଚନ୍ଦ୍ର,

ପର୍ବତର ସ୍ରୋତ ଦ' ଭାଗ କରି ଆସିଛି !
ମୁଁ ଧ୍ୱଂସ କରିବି
ବସ୍ତ୍ରହରା ନାରୀର ଦଗ୍‌ଧ ଜ୍ୱାଳା
ମୁଁ ବର୍ଷିବି,
ସହସ୍ର ଧାର ଅଶ୍ରୁର ଏକ ବିନ୍ଦୁ !
ଲୌହଗର୍ଭ ଧରିତ୍ରୀର ନାଭିପଦ୍ମ ଓଟାରି
ମୁଁ ଆସିଛି,
ତା'ର ଆତ୍ମା ଶୋଷଣ କରି ମୁଁ ଆଣିଛି ସ୍ତନ୍ୟ,
ନାରୀ ! ତୁମର ସ୍ତନାଗ୍ର ଚୂଡ଼ାରେ ଟଳମଳ କରୁ
କ୍ଷୀରବଧ୍ୱର ବିଚ !

    ଶିଶୁ ! ତୁମର ସ୍ଫୂର୍ତ୍ତି ମୁଁ ଆସିଛି
    ପ୍ରୀତିର କନ୍ଦୁକ ମୁଁ ଚନ୍ଦ୍ର,
    ଜ୍ୟୋତିର ମନ୍ଦାର ମୁଁ ସୂର୍ଯ୍ୟ !

ଆସିଛି ମୁଁ ଆସିଛି,
କବନ୍ଧର କୁଣ୍ଠା ରଚନା କରେ କିଏ ?—ବନ୍ଦ କର !
ବିକୃତିର ବିଗ୍ରହ ରଚନା କରେ କିଏ ?—ଉପାଡ଼ ହୁଏ !
ବନ୍ଧୁକର ବର୍ମ୍ମ ଭେଦ କରି ମୁଁ ଆସିଛି ।

॥ ୨୨ ॥

ବେକାର ଦଖିଣର ଚତ୍କାର ଆଜି ପୋଛି,
କଙ୍କାଳ ରାତ୍ରିର ବିଳାପ ଆଜି ପୋଛି,
ପଞ୍ଜରର ବିବରମୁଖୀ ବନ୍ୟା ଭିତର ଭ୍ରୂଣ
ମୁଁ ଆସିଛି ।
ପିଙ୍ଗଳ ଆକାଶରେ ତୁମର ଛିନ୍ନ ନଥିର ପତ୍ର
ଏଇ ଉଡ଼େ,
ଶରତର ଶୁଭ୍ର ବାଦଲ
ଆଜି ସ୍ତବ୍ଧ !
ଆପଣାକୁ ଆପେ ଉଜାଡ଼ି କରି
ଜଳଧିର ମନ୍ତ୍ର ନିନାଦ ଭଳି
ଭଲ ପାଅ, ମତେ ଭଲ ପାଅ ।

ମୁଁ ଆସିଛି,
ଶସ୍ୟର ଶାଶ୍ୱତ ବାଣୀ, ମୁଁ ଢକ୍କା !
ଚମ୍ବନର ଅଳିମ୍ପନ ଲେଖି
କାର୍ପାସର ବୃନ୍ତି କଥାରେ

କାଶ କଏ ? କାଶ !
କାଶହାସରେ ଲୌହ-ଲବଣ୍ୟ ଆଣି
କାଶ କଏ ? କାଶ !
ତୁମର ପିଷ୍ଟପେଶୀରେ ବଜ୍ରର ବିଳାପ
ବାଜୁ !
ଅକାଳପକ୍ୱ କେଶରାଶିରେ ଚୀନାଂଶୁ କରସ୍ପର୍ଶ
ଲାଗୁ !
ଯୁଗର ବକ୍ଷରେ ମୁଁ ଅକାଳ ବସନ୍ତର ଢଢକ୍ଷା
ମୁଁ ସ୍ଫୁରୁ !
କପାଳର ଘର୍ମ ତୁମଁର ଓଷ୍ଠପୁଟରେ ନଇଁ
ମୁଁ ଆସିଛି, ମୁଁ ଆସିଛି ।

ଯନ୍ତ୍ର-ମୁଖର ଦିବାକୁ ନିର୍ନିମେଷ ନୀରବତାରେ
ଘିଣ୍ଟିକରି
ଆସିଛି, ମୁଁ ଆସିଛି ।

ଆଣବିକ ଖଡ୍‌ଗ ଧର କିଏ ?—ଦୂର ହୁଅ !
ବୈଦ୍ୟୁତିକ ବାତ୍ୟା ଆଣ କିଏ ?—ଦୂର ହୁଅ !
ଆସିଛି ମୁଁ ଆସିଛି,
ଯାତ୍ରୀଙ୍କର ଅର୍ଜି-ସ୍ତୂପ ଠେଲି ମୁଁ ଆସିଛି
ଷ୍ଟିଲବରଣୀର ମର୍ମ ଭେଦ କରି
ମୁଁ ଆସିଛି, ତାରୁଣ୍ୟର ଅଭିମାନ !
ଲଙ୍ଗଳର ପଥ ରୋଧ କର କିଏ ? ପନ୍ତୁର !
ଶସ୍ୟର ସିନ୍ଦୁକ ରୋଧ କର କିଏ ? ପଙ୍ଗପାଳ !
ଆତ୍ମାର କଣ୍ଠ ରୋଧ କର କିଏ ? ଆତତାୟି !

ଅନିରୁଦ୍ଧ ସିନ୍ଦୁକ ମୋର ଛୁଟେ
ଦିକ୍-ଦିଗନ୍ତ ଛୁଟେ;
ପାଣିର ପଣବରେ ଦୂର ହୁଅ
କାଳସର୍ପର ଘୋଷ,
ମାତୃଘାତୀର ପୀଠ !
ଆସିଛି ମୁଁ ଆସିଛି
ହୃତ୍‌କମ୍ପର କ୍ୱଳନ୍ତି ବହ୍ନି !



# ଝର ରେ ରୁଧିର

ଅନନ୍ତ ପଟ୍ଟନାୟକ



ଝର ରେ ଅଧୀର ହୃଦୟୁଁ ରୁଧିର, ଝର ରେ ଝର !
ଧାର ଶିରାବଣ ଝରଣୁ ବଳି ତୁ
ଭସାଇ ଦିଅ ରେ ଧରଣୀ ତଳ,
ଝରରେ ରୁଧିର ଝର ରେ ଝର ।
ଲୋଡ଼ା ନୁହେଁ ଆଜି ରୁଦ୍ଧ ମନର ଦଗ୍‌ଧ ଶ୍ୱାସର କରୁଣ କଥା,
ଲୋଡ଼ା ନୁହେଁ ଆଜି ଅର୍ଘ୍ୟ-ଦୀପାଳି, ଝୁରୁ ନୟନର ସିକ୍ତ ପତା,
ଗର୍ଭ ଭେଦି ଯେ ତାମସୀ ନିଶିର ଆଣିଲ ନବୀନ ଜୀବନ-ସ୍ୱାଦ,
ଲୋଡ଼େ ସେ ଆଜିରେ ମୁକୁଳା ପ୍ରାଣର ଶୋଣିତ-ପଖଳା ପାଗଳଗୀତ,
ପଥେ ପଥେ ତାର ସଜାଇ ଦିଅ ରେ ହୃଦୟ୍ୟ ଜବାର ଛିନ୍ନ-ଦଳ,
ଝର ରେ ରୁଧିର ଝର ରେ ଝର
ଝରି ଯାଉ ଖରେ ଦୁଃଖ ପ୍ରୟରେ ନୀରବ ଶୋଚନା ନୟନଜଳ ।

ମୁଖୁର ଜନେ ପଞ୍ଚଶ ସଞ୍ଚଶ ତୋଳେ ଯେ ତୋ ଲାଗି ରକ୍ତ-କଇଁ
କୃଷ୍ଣ-ନାଗର ଦଂଶନେ ମେ କି ପଡ଼ିବ ନଇଁ ରେ ପଡ଼ିବ ନଇଁ
ତୃଷାରେ ତୃଷାରେ ଶସ୍ୟର ହାସ
ନଗ୍ନ ଉଷାର ରକ୍ତ ଉଚ୍ଛ୍ୱାସ
ସ୍ୱପ୍ନ ବହ୍ନିଲ ଫୁଟାଇଲ ଯେନ୍ତୁ ଶିଳ୍ପୀ ମୃଜନୀ ତୁଳିକା ବହ୍ନି !
ରକ୍ତରେ ! ମୋର ହୃଦୟ୍ ଆଉ ତୁ, ପଡ଼ିବ ନଇଁ କି ପଡ଼ିବ ନଇଁ ?
ପାଶୋର ଦେଏ ରେ କ୍ଷୁଦ୍ର ମମତା, ବନ୍ଧ-ଗୃହର ବନ୍ଦୀ ସ୍ୱର
ଝର ରେ ରୁଧିର ଅଧୀରେ ଝର
ଶୂନ୍ୟ ଯେତେ ରେ ସ୍ୱପ୍ନ-କଳସୀ, ଉଚ୍ଛ୍ୱସି ଲସି ଭର ରେ ଭର !

ସଞ୍ଜୀବନୀ ଯେ ବକ୍ଷୁ ନିଗାଡ଼ି ନିର୍ଜୀବ ମନେ ଦେଉଚି ଢାଳି
ଚନ୍ଦନ ଧୂପ ଲୋଡ଼ା କି ତାହାର ଲୋଡ଼ା ଯେ ତା ପାଶେ ରକ୍ତ ଢାଳି,
ଜୀର୍ଣ୍ଣ ଜୀବନେ ଯଉବନ ଦେଇ
ବନ୍ଧନ ଶତ ଯାଉଚି ଫେଇ

ଅନ୍ଧାର ପଥେ ଅଗ୍ରଣୀ ସୈନ୍ୟ ମୁକ୍ତ ପ୍ରଦୀପ ଗର୍ବେ ଜାଳି;

ଝର ରେ ରୁଧିର ଝର ରେ ଝର

ତାହାର ଲାଗି ତୁ ସପ୍ତ ସାଗର ଜଳ ରେ ଏକାଳେ ଉଚ୍ଛୁଳିଲ,

ପୁରେ ପୁରେ ଯେତେ କଣ୍ଠାଫିଶକ ଚକ୍ଷୁ ଉଢ଼ାଳେ ମରୁଚ ରନ୍ଧ୍ର

ତାହାର ଆସର ସଉରଭ ତୋର ଗଦଗଦ ଖଣ୍ଡେ ମାଥ ରେ ବନ୍ଧ

ମଳୟ ଆବେଶେ ମତ୍ତ ଦେହରେ ଢଳିଲାଇ ଯେତେ

ଅସୀମ କାଳର ତୁ ହିମାଚଳ !

ଝର ରେ ରୁଧିର ଝରରେ ଝର !

ମଲ୍ଲୀ ମରୁଆ ଖୋସାରେ ସଜାଇ ଶିମୁଳି ପଳାଶ ଦଳ ।

ଝର ଯା ଲହୁ ମୋ ଝର ଯା ପୁଲକେ, ଜନ୍ମଭୂମିର ଜୀବନ ପଥେ,

ଜଙ୍ଗିର ଶତ ଖଣ୍ଡ ମୋ ଜାତିର ଚକ୍ରୁ ସେ ମାଢ ରେ ସୃଜନ ରଥେ

ଶାନ୍ତ ଆମୋଦେ ଆଶିଷ ଯେତେ ଶାଶ୍ୱତ ଶତ ସଂଖ୍ୟ ବଳ

ଝର ରେ ରୁଧିର ଅଧୀରେ ଝର

ଅଶ୍ରୁ ସାଗରେ ଅଗ୍ନି-ବାଣୀ ତୁ, ଅନ୍ତରେ ମୋର ଜଳ ରେ ଜଳ ।

ଧୂସର ବାଲିର ବେଲାରେ ବେଲାରେ

ଶସ୍ୟ ସୁଷମା ଖେଳାରେ ଖେଳାରେ

ଝର ଯା ଝରରେ ପ୍ରାଣର ଆଜି ରେ ପୋଛି ଦେଇ ମନୁ ଆପଣା ପର,

ଝର ରେ ରୁଧିର ଝର ରେ ଝର

କରାଳ କାଳର-କୃଷ୍ଣ-କପୋଳେ ସ୍ୱପ୍ନ-ତାରକା ଝର ରେ ଝର ।



# କବି ହେବାପାଇଁ ବାସନା ମୋର

ରାଧାମୋହନ ଗଡ଼ନାୟକ



କବି ହେବାପାଇଁ ବାସନା ମୋର
ପ୍ରବଳ ଜ୍ୱାର ରେ ପ୍ରବଳ ଜ୍ୱାର,
ନୀଳ ଆକାଶର ପକ୍ଷୀଟି ସମ
ଉଡ଼ି ବୁଲୁଥାଏ ଏ ମୋର ମନ,
ଦୁନିଆ ପାର ରେ ଦରିଆ ପାର ।

ଉଲ୍ଲାସ-ଭରେ ବିହରୁଥାଏ
ସୁଦୂର ଦେଶର ସୁଧୂର ବାଏ
ନୀଳିମ ନଭର ଅସୀମ ପଥେ
ଦ୍ୟୁଲୋକର ଭରା ଆଲୋକ ସ୍ରୋତେ
ଲୀଳା-ଚଞ୍ଚଳ ମେଘ ମହଲେ
ବଜ୍ର-ବିଜୁଳି-ବରଷା ତଳେ
ଶଇଳ-ଶିଖର ଛଇଳ ଦେହେ
କୁଞ୍ଜବନର ସବୁଜ ଗେହେ,
ନଗର ପୁରୀର ସଉଧ ଚୂଳେ
ପଲ୍ଲୀ ଗାଆଁର ସରିତ କୂଳେ,
ଯନ୍ତ୍ରପୁରୀର ବାଷ୍ପ ଧୂମେ
କ୍ଷୁବ୍‌ଧ ଶୋଣିତ ଯୁଦ୍ଧ-ଭୂମେ
ତରୁ-ଗୁଲ୍ମ-ହୀନ ମରୁସଇକେ
କେତେ କାହିଁ ଯେ ।

କାହାର ସହିତ ଆଳାପ କରେ
କାହାର ସହିତ ପ୍ରେମଳାପ କରେ
କାହାର ସହିତ ପ୍ରଳାପ କରେ
କାହାର ସହିତ ବିଳାପ କରେ
ଉଡ଼ି ବୁଲୁଥାଏ ଇଚ୍ଛାଗୃଧ୍ର,
କବି ହେବାପାଇଁ ବାସନା ମୋର
ପ୍ରବଳ ଜ୍ୱାର ରେ ପ୍ରବଳ ଜ୍ୱାର ।

॥ ୧୭ ॥

କବି ହେବାପାଇଁ ବାସନା ମୋର
ଦିବସ ରାତି ରେ ଦିବସ ରାତି,
ମୁଗ୍ଧ କିଶୋର ଅଲକ୍ଷି ପଶି
ଅନ୍ତର ତଳେ ଆବେଗ ଧରି
ଉଠଇ ମାତି ମୁଁ ଉଠଇ ମାତି ।

ଫୁଲାଏ କୁସୁମ ବୁକୁର ରସ,
ଜୋଛନା ରାତିର ଉଛନ ହସ,
ଶେଷ ଚଇତର ଭଗ୍ନ ହରଷ,
ଧାରା ବରଷାର ସରସୀ ଦାନ,
ତରୁଣୀର ଲାଜ ଲାଜ ଚାହାଣୀ
ଗୁପତ ହସ୍ତାର ରୂପ କାହାଣୀ
କ୍ଷିପ୍ର-କଳ-କେକା-ରସ-ଗାଆଣୀ
ଅଧୀର ନଦୀର ମଦିର ତାନ ।

ବନ ମାଳତୀର ଭଗନ ପ୍ରୀତି
ଚାତକର ଭୁକା ଲଗନ ତଥି
ମରୁ ମୂଳକର ନଗନ ସ୍ମୃତି
ଜଳ ପ୍ରପାତର ଉଛୁଳା ଗାନ,
କୃଷାଣ କୁଳର ଜୀବନ ବ୍ୟଥା
ନାରୀ ହୃଦୟର ଗୋପନ କଥା
ବାର-ବନିତାର ଜୀବନ ଜାଲା
ବାଳ ବିଧବାର ସାଧନା ଧାରା
ସବୁ ପତିତର ମଥିତ ପ୍ରାଣ ।

ସବୁରି ଲୁହ ରେ ସବୁରି ଲହୁ
ଅନ୍ତରେ ଆଣି କରଇ ମହୁ;
ସେଇଠିକ ମୋର ବୁକୁର ଥାତି ।
କବି ହେବାପାଇଁ ବାସନା ମୋର
ଦିବସ ରାତି ରେ ଦିବସ ରାତି ।

କବି ହେବାପାଇଁ ବାସନା ମୋର
କବିତା ଲେଖେ ମୁଁ କବିତା ଲେଖେ

## ॥ ୨୮ ॥

କବିତା ପରମ ପ୍ରେୟସୀ ମୋର
କବିତା ପରମ ଶ୍ରେୟସୀ ମୋର
ଅନ୍ତରେ ତାର ମୂରତି ଦେଖେ ।

କେତେବେଳେ ବସି ନିରୋଳା ଥାନେ
ରସିଯାଏ ମୁହିଁ ତାହାର ଧ୍ୟାନେ ।
ଯେତେ ପରକାର ଭାବିଲେ କାହିଁ
ଅନ୍ତରୁ ଧାରା ଫିଟଇ ନାହିଁ,
ମଉଳେ ମୋହର ସବୁଜ ଆଶା ।

ଅଭିମାନିନୀର ବିଷମ ରୀତି
ବୁଝି ହୁଏ ନାହିଁ ତାହାର ଗତି,
ବେଳେ ବେଳେ ଆସି ବିକୁଳି ପ୍ରାଏ
ବଳେ ବଳେ ଧାରା ଅଜାଡ଼ି ଯାଏ
ରଖିବାପାଇଁ ମୁଁ ପାଏ ନି ଭାଷା ।
ମନେ ମନେ ମୁହିଁ ଉନ୍ମତ୍ତ ହୋଇ
ଦମ୍ଭେ ମୁଁ ମୋର ଲେଖନୀ ଧରେ
କବି ହେବାପାଇଁ ବାସନା ମୋର
କବିତା କରେ ମୁଁ କବିତା କରେ ।



# ମୌସୁମୀ

ରାଧାମୋହନ ଗଡନାୟକ

●

ତୂର୍ଣ୍ଣ ଗଢର ହିଲ୍ଲୋଳେ ଆଜ ପୂର୍ଣ୍ଣ ବଳେ
ଧାଇଁ ଆସିଅଛୁ ମୌସୁମୀ ମୁହିଁ ମୃଷ୍ଟି ପରେ ।
ପ୍ରବାହେ ମୋହର କୃଷ୍ଣ ବାଦଲ ଦେଇଛୁ ଖୋଲି,
ମଣୁଛ କି ମତେ
ଆଲୁଳିତ-କେଶ
ବଲୁଳିତ-ବେଶ
ଦୈତ୍ୟ ବୋଲି ?

ଡରୁଛ କି ମତେ ?
ଡାକୁଅଛୁ ମୁଁ ଯେ ମନ୍ଦ୍ରସ୍ୱରେ,
ହସି ଦେଉଅଛୁ ବଜ୍ର-ବିଜୁଳି-ଅଟ୍ଟହାସେ ?
ବରଷି ଦେଉଚ ତୁମୂଳ କରକା ତୀବ୍ରତର
ମତାଇ ଦେଉଚ ଅକାଳ ପ୍ରଳୟ-ବରଷା-ଝଡ଼ ।
ଡର ନା ମତେ ରେ
ଡର ନା ମୋତେ ରେ
ମର୍ତ୍ତ୍ୟ-ଜୀବ,
ରୁଦ୍ର ସିନା ଏ ମୂର୍ତ୍ତି ମୋହର
ମୁହିଁ ତ ଶିବ ।
ନୀଳ ସୁନ୍ଦର ମହାସିନ୍ଧୁର ଉରସ ପରେ
ଦୋଳୁଥିଲି ମୁହିଁ ହରଷଭରେ ।
ଊର୍ମି-ସଞ୍ଚାର ଚକୁରେ ଚବୁକେ,
ପୀରଢର ରସ-ହାସ-କୌତୁକେ
ଲଗାଇ ପାଣି,
କହି ଉଠୁଥିଲି "ରାଣୀ ଗୋ ରାଣୀ" !
ପ୍ରଣୟ-ମୁଗ୍ଧା ଜଳ-ଉଚ୍ଛ୍ୱାସେ
କହି ଉଠୁଥିଲା ରସ-ଉଲ୍ଲାସେ
"ପ୍ରିୟ ହେ ପ୍ରିୟ,

ଆହୁରି ଦିଅ ସେ ମଦିର-ପରଶ, ଆହୁରି ଦିଅ ।’’
ଲୋଟିପଡ଼ି ତାର ନଗନ ଜଘନ ବକ୍ଷପରେ
ଫେନ-ହାସ ତାର ପିଇ ପିଇ ଓଠ-ଚୁମ୍ବନରେ
ହେଉଥିଲି ରସ-ରଙ୍ଗେ ଭୋଳ,
ତପତ କାହାର ନିଶ୍ୱାସ
ବୁକୁ ବେଦନାର ଉଚ୍ଛ୍ୱାସ
ସହସା ବାଜିଲା ଅଙ୍ଗେ ମୋର ।
ଚଞ୍ଚଳ ମୁହିଁ ଚକିତେ ଫେରି,
ଅନାଇ ଦେଖିଲି ଦୃଷ୍ଟି ମେଲି—

ତମାଲ ତାଳୀର କାନନିକା ଗୁଡ଼ି ବଳାକାଶ୍ରେଣି
ମହାସିନ୍ଧୁର ବନ୍ଧୁର ବୁକେ ପଡ଼ୁଛି ଝାସି ।
ଧରଣୀର ତଳ ଖର ଉତ୍ତାପେ ଉଠୁଛି ଭରି
ଶସ୍ୟ-ଶଷ୍ପ-ପୁଷ୍ପ ବିତାନ ଯାଉଛି ଜଳି ।
ଧୂଳିର କୁହେଳି କୁହୁଳି ଥରକୁ ଥର
ଧୂମ୍ର ଧୂସର କରି ଦେଉଅଛି ଗଗନତଳ ।
ଶୈବାଳିନୀର ସୈକତ ବୁକେ ରସର ରେଖା
ଶୁଖି ଯାଇଅଛି—ଯାଉନି ଦେଖା ।

ନୀଳ ସୁନ୍ଦର ଶଇଳପୁଞ୍ଜ,
ଫୁଲ୍ଲ ବିକଚ ଅଟବୀକୁଞ୍ଜ
ପ୍ରଳୟ ଭଳି—
ଦାବ ଦହନରେ ଯାଉଛି ଜଳି ।
ତୃଷ୍ଣା-କାତର ଚାତକ-କଣ୍ଠ ଯାଉଚି ଫାଟି
ଆଁ କରି ଏବେ ଶୂନ୍ୟେ ଚାହିଁଛି ଜୀର୍ଣ୍ଣ ମାଟି ।
ମାଟିର ଭକତ ଅମ୍ବରେ ଚାହିଁ ବାରମ୍ବାର
ଡାକି ଦେଉଅଛି ହା-ହା-କାର ।
ସକଳ ଦେଖି

ମୁହିଁ ନ ଦେଖୁଣୁ ପ୍ରେୟସୀ ମୋହର କହିଲା “ଏ କି” ?
ମୁଁ କହିଲି “ଆଅ, ଚାଲିଲି ଏବେ ।”
ସେ କହି ଉଠିଲା, “ମୁଁ ଯିବି ତେବେ,
ମୁହିଁ କି କେବଳ ଜୀବନର ଭ୍ରମ

ନର୍ମମନ୍ତ୍ରୀ ?
ହୋଇ ପାଶବନ୍ଧ କର୍ମ-ସନ୍ଧ ?
ହେ ମୋର ପ୍ରିୟ
ସଙ୍ଗେ ନିଅ ।"
ବିପୁଳ ପୁଲକ-ପରଶ-ଭରେ ମୁଁ ହରଷଭରେ
ପ୍ରିୟାରେ ମୋହର ଆଶ୍ଳେଷି ନେଲି ଉରସପରେ ।
ଆଉ ତ କାହିଁ
ଘନ ବନ୍ଧନ ଫିଟିଲି ନାହିଁ ।
ଦୁଓଟି ଜୀବନ ମିଶିଯାଇ ଆଜ ମିଶ୍ରରାଗେ
ଧାଇଁ ଆସିଅଛୁ ମୌସୁମୀ ମୁହିଁ ଧରଣୀ ଯାଗେ ।
ନମ୍ର ନୁହଇ, କମ୍ର ନୁହଇ, ନୁହଇ ଧୀର,
ଉଗ୍ର ମୁଁ ଆଜ, ବ୍ୟଗ୍ର ମୁଁ ଆଜ ଅଗ୍ରସର ।
ସାଗରବକ୍ଷୁ ବନ୍ଧୁ ଆଣିଅଛୁ ସଲିଳଧାରା,
ଦୂର ଦିଗନ୍ତୁ ଉଡ଼ାଇ ଆଣିବ ବାଦଲମାଳା ।
ପୀଡ଼ିତ ପ୍ରାଣର ମଙ୍ଗଳ ଲାଗି ଜୀବନ ଦେଇ
ଦୁର୍ଦ୍ଦିନ ମୁହିଁ
ସୃଷ୍ଟିର ତଳେ
ଦୁର୍ଦ୍ଦିନ ମୁହିଁ
ଆଣୁଛୁ ଏଇ……



# ସ୍ମରଣିକା

ରାଧାମୋହନ ଗଡନାୟକ



॥ ୧ ॥

ମଣିମୟ ଅଟ୍ଟାଳିକା ପରେ
ପୁଲକିତ ଚନ୍ଦ୍ରତାଳ ରାତେ;
ମହାରାଜା କପିଳେନ୍ଦ୍ରଦେବ
ବସିଥିଲେ ମହାରାଣୀ ସାଥେ ।

ସ୍ନିଗ୍ଧ କରି ନୈଶ ସମୀରଣ
ମୁଗ୍ଧ କରି ଫେନିଳ ଜୋଛନା,
ବଇଁଶୀର ବୁକୁ ଉଛୁଳାଇ
ତୋଳୁଥିଲେ ମଦିର ମୂର୍ଚ୍ଛନା ।

ଶୁଣୁ ଶୁଣୁ ବିମୁଗ୍ଧା ମହିଷୀ
ଅତର୍କିତେ ଉଠିଲେ ଉଚ୍ଚାରି
"ପଗ୍ଭରିବ ନିତି ନିତି ଭାବେ
କେବେହେଲେ ପାରେ ନା ପଗ୍ଭରି ।"

ହସି ହସି ଭାସିଲେ ରାଜେନ୍ଦ୍ର
ପରକାଣି ମରମର ଭାଷା,
"ଏଇକ୍ଷଣି କହୁ ନାହିଁ କିପାଁ
କି ଅବା ଯେ ତୁମର ଜିଜ୍ଞାସା ?"

॥ ୨ ॥

"ସେଇ ଯେଉଁ ବଇଁଶୀ ଖଣ୍ଡିକ
ବଜାଉଚ" ପଗ୍ଭରିଲେ ରାଣୀ,
ରକ୍ତାରୁଣ ଚଂଚୁଳ ଅଧରେ
ଚହଟାଇ ସୁହାଗର ବାଣୀ,

"ବାଉଁଶର ବଇଁଶୀ ଖଣ୍ଡିକ
ହୋଇଲାଣି ଜୀର୍ଣ୍ଣ ପୁରାତନ
ତଥାପି ତ ଗ୍ଭଡ଼ିପାରୁ ନାହିଁ
ସତେ ଯେହ୍ନେ ପୀରତିର ଧନ !

ଉତ୍କଳର ଗଜପତି ତୁମେ,
ତବ ପୁରେ କି ଅବା ଦୁର୍ଲ୍ଲଭ,
କେଉଁ କଥା ଅପୂରୁବ ଭଲ ?
ନାହିଁ ଅବା କେଉଁ ବଇଭବ ?

ରାଜହସ୍ତେ ସୁନାର ବଇଁଶୀ
ହେଲେ ସିନା ହଅନ୍ତା ଶୋଭନ,
ଉତ୍କଳର ରାଜେଶ୍ୱର ହୋଇ
ତହିଁ କିବା ବଳୁ ନାହିଁ ମନ ?"

॥ ୩ ॥

"ବଳୁ ନାହିଁ ମନ ମୋର ରାଣୀ,
କେବେହେଲେ ନ ବଳିବ ମନ,
ଏଇ ମୋର ବଇଁଶୀ ଖଣ୍ଡିକ
ଜୀବନର ଅତି ପ୍ରିୟଧନ ।

ପୂର୍ବେ ଯେବେ କିଶୋର ବୟସେ
ଗୋଚାରଣ କରୁଥିଲି ମୁହିଁ
ଧେନୁପଲ ପଛେ ପଛେ ଧାଇଁ
ଘୂରୁଥିଲି ବଲ-ବନ-ଭୂଇଁ,

ସେତେବେଳେ ଆଗୋ ପ୍ରିୟତମା
ସେତେବେଳେ ଏଇ ଖଣ୍ଡି ମୋର
କରିଥିଲି ପ୍ରାଣର ପଙ୍ଖାଳି,
ହେଉଥିଲି ଆନନ୍ଦେ ବିଭୋର ।

ଥକିଗଲେ ପାଦ ଦୋଟି ମୋର
ବଇଁଶୀଟି ରଖି ମୋର ଓଷ୍ଠେ
ଗୋଷ୍ଠହରା ଗାଈଟିରେ ମୋର
ଡାକଆଣି ଯାଉଥିଲି ଗୋଷ୍ଠେ ।"

॥ ୪ ॥

"ଆଜି ଆଉ ଗୋଚାରଣ ତୁମେ
କରୁ ନା ତ ବଲ ବନେ ବୁଲି,
କେବଳ ଏ ବଇଁଶୀ ବଜାଇ
ଭୁଞ୍ଜୁ ନାହଁ ଜୀବନ-ମାଧୁରୀ ।

॥ ୩୪ ॥

ଗୋଷ୍ଠହରା ଗାଈଟିରେ ଅବା
ଆଜି ତୁମେ ଡାକୁନାହଁ ଆଉ
ଆଜି ତୁମେ ଉତ୍କଳ ସମ୍ରାଟ
ଆଜି ତୁମେ ବୀର ମହାବାହୁ ।

ସୁବିଶାଳ ବଇଭବ ତବ
ସୁବିପୁଳ ମାଣିକ୍ୟ ରତନ,
ଦିଗ୍‌ବିଦିଗେ ଦେଶ ଦେଶାନ୍ତରେ
ଉଡ଼ାଉଚ ଗୌରବ କେତନ,

ଏତେ ଧନ ଏତେ ଗଉରବ
ଦେଶେ ଦେଶେ ଏତେ ସନମାନ !
ବାଉଁଶର ବଇଁଶୀ ଖଣ୍ଡିକ
ତୁମ ପକ୍ଷେ ନୁହେଁ ଅପମାନ ?"

॥ ୫ ॥

"ଅପମାନ ନୁହେଁ ଆଗୋ ରାଣି,
ଏ ଯେ ମୋର ସମ୍ମାନର ମୂଳ,
କହ ଦେଖି ସୁନାର ବଇଁଶୀ
କାହୁଁ ହେବ ଏହା ସଙ୍ଗେ ତୁଲ ?

ଦୈନ୍ୟ-କ୍ଲିଷ୍ଟ ଅତୀତର ମୂର୍ତ୍ତି
ଅବିରତ କରି ଅପାସୋର
ରଖିଚି ଏ ବଇଁଶୀ ଖଣ୍ଡିକ
ପ୍ରିୟତମ ବନ୍ଧୁ ଏ ଯେ ମୋର ।

ମନର ମୋ ଲକ୍ଷ ଅଭିଳାଷ
କଷ୍ଟହରା ହେଉଅଛୁ ଯେବେ,
ଏଇ ମୋର ବଇଁଶୀର ସ୍ୱରେ
କଷ୍ଟେ ଡାକ ଆଣୁଚି ମୁଁ ତେବେ ।

ଉତ୍କଳର ଅଧିପତି ହୋଇ
ସଯତନେ ରଖିଚି ସମ୍ପାଦ
ମନେ ବହି ଶରଧା ସୁହାଗ
ନଜାଉଚି ମୁହିଁ ବୁ ଖବାଗୀ ।"

॥ ୭ ॥

ପରାଜିତ କଣ୍ଠେ ତୋଳି ତହୁଁ
ମାନମୟୀ ଉତ୍କଳର ରାଣୀ
ରକ୍ତାରୁଣ ଚଞ୍ଚଳ ଅଧରେ
ଫୁଟାଇଲେ ଧୀର ନମ୍ରବାଣୀ,

"ହେ ଦେବ, ମୁଁ ବୁଝିବି କପର
ତୁମର ସେ ମହତ୍ତ୍ୱର କଥା ?
ତରଙ୍ଗିଣୀ ପାରଇ କି ବୁଝି
ଅମ୍ବୁଧିର କବା ଗମ୍ଭୀରତା ?"

ସ୍ମିତାଧରେ କପିଳେନ୍ଦ୍ରଦେବ
ଉତ୍ତରିଲେ, "ଅୟି ପ୍ରିୟତମା,
ତୁମ ଇଚ୍ଛା ନ ପାରିଲି ରଖି
ସେଥିପାଇଁ ଦେବ ମୋତେ କ୍ଷମା ।

ସୁନାର ସେ କଳ୍ପନା ତୁମର
ରଖି ନ ପାରିଲି ଅଗୋ ସଖି,
ତଟିନୀର ମଧୁରତା ସ୍ୱାଦୁ
ପାରାବାର ପାରେ ନାହିଁ ରଖି ।"



# ମାଟି ଓ ମଣିଷ

କୃଷ୍ଣଚନ୍ଦ୍ର ତ୍ରିପାଠୀ



ଛାଡ଼ିଦିଅ ଛାଡ଼ିଦିଅ, ଛାଡ଼ିଦିଅ ମତେରେ
ଚାଲିଯିବି ବିଶ୍ୱ ଏ ଧରଣୀର ପଥରେ,
ଯେତେ ଶ୍ରେଷ୍ଠ ସ୍ୱାର୍ଥ, ଯେତେ ଶ୍ରେଷ୍ଠ ବେଷ୍ଟନୀ,
ରଖନା ରଖନା ଭିଡ଼ି
ମାଟିର ମୁଁ ସ୍ୱାର୍ଥ, ମାଟିର ମୁଁ ସମ୍ପଦ ।
ବିଶ୍ୱ ଜୀବନ ମୁଁ
ବିଶ୍ୱରେ ମିଶିଯିବି ସତେରେ ।

ଅସୀମର କେନ୍ଦ୍ରରୁ ଆସିଛି ମୁଁ ଖସି ରେ,
ମତେ ଭଲ ଲାଗୁନାହିଁ ଏଠି ବସି ବସିରେ
ମୋର ଧନ-ଜନ-ଗୋପ-ଲକ୍ଷ୍ମୀ ମଣିଷ ଓ ମାଟିରେ,
ଏହାର ଭିତରେ ନେବି ମୋ ଜୀବନ କାଟିରେ;
ପାରିବି ନି କାହାରେ ମୁଁ ଛାଡ଼ି ତ !
ସଭିଏଁ ମୋ ଜୀବନର ନାଡ଼ି ତ !
ସବୁର ଓଠରେ ମୋର ଭାଷାରେ
ସବୁର ବୁକୁରେ ମୋର ଆଶାରେ
କିଏ କାହିଁ କାନ୍ଦୁଛି, କିଏ କାହିଁ ପଡ଼ିଅଛି,
ଅନାଦରେ ଅନାହାରେ କାହିଁରେ
ଯିବି ମୁହିଁ ତାହା ପାଶେ ଧାଇଁରେ;
ମୁଁ ସବୁର ପାଇଁରେ
ଜାଗ୍ରତ ଉତ୍ଥିତ ଝନ୍ଦ୍ରଯିବ ନାହିଁରେ !!

ମଣିଷର ଉଆସ ମୁଁ ରଚିବି ମୋ ଭିତରେ
ମଣିଷ ମୋ ବୁକୁତଳ ହୃତ୍ପିଣ୍ଡ ସତରେ ।
ମଣିଷ ହସିଲେ ମୋର ହସିଉଠେ ଦେହ-ମନ,
ଢ଼ି ରେଣୁ ତଳରେ
ମଣିଷ ଜାଗିଲେ ମୋର ଜାଗିଉଠେ ସିଂହର ବଳରେ ।

॥ ୩୭ ॥

ମଣିଷ ଉଠିଲେ ମୁହିଁ ଉଠିଯାଏ, ଉଠିଯାଏ
ସୀମାହୀନ ଆକାଶେ
ଅନନ୍ତ ବିକାଶେ,
ସ୍ମିତ ମୋର ମହମ ତ ସୁନ୍ଦର ଉଜ୍ଜ୍ୱଳ
ଏ ମଣିଷ ପ୍ରକାଶେ ।

ମଣିଷଠୁ ଭିନ୍ନ ମୁଁ ହୋଇ ରେ
ପାରିବନି, ପାରିବନି, ପାରିବନି ରହିରେ ।
ମଣିଷ ମଣିଷ ଖାଲି ମଣିଷ ମୋ ଜୀବନର
ସମ୍ପଦ ପରମ,
ମତେ ଖାଲି ଭଲ ଲାଗେ ମଣିଷର କଥାବାର୍ତ୍ତା,
ମଣିଷର ସେନେହ
ମଣିଷର ଅମୃତ ମରମ ।

ମତେ କହ ମଣିଷର ସୁଖ ଦୁଃଖ ବେଦନା
ମତେ କହ ମଣିଷର ଅଦ୍ଭୁତ ସୀମାହୀନ ସାଧନା ।
ମତେ କହ ମଣିଷର ସେତେ ଯାହା ବିଚକ୍ଷଣକରଣୀ,
ଯାହା ପେନ ହସିଉଠେ ମାଟିର ଏ ଧରଣୀ
ମତେ କହ ମଣିଷର ଦୟା କ୍ଷମା କରୁଣାର କଥା ହେ,
ମତେ କହ ମଣିଷ କେଉଁଠି କେବେ ସ୍ୱଲଅଛୁ ଗରବେ
ଉନ୍ନତ କରି ତା'ର ମଥା ହେ ।
ମତେ କହ ମଣିଷକୁ କିଆଁ ନିଷ୍ଠୁରେ ମାରିଲା,
ମତେ କହ ମଣିଷକୁ ସାତ ସ୍ଥାନମାନ କରି
କିଏ ବାନ୍ଧି ଥୋଇଲା ।

କହ ମୋର କାନେ କାନେ ଦୁଃସହ
ପୀଡ଼ା ବାଜି କାହାର
ମଣିଷ ହୋଇଛି ଜନ ପାଙ୍କ୍ତିରୁ ବାହାର ।

ମଣିଷକୁ ଭଲପାଏ ମୁହିଁ ଭଲପାଏ ହେ
ଟିକିନିଖି ସବୁ ତା'ର ଜାଣିବାକୁ ସ୍ପୃହେ ହେ,
ମଣିଷ ଜୀବକୁ କିଏ ଶ୍ରେଷ୍ଠ କରି ଦେଖେ ରେ
ଏତେ ଅପରାଧ କିଏ ନିଜ ଶିରେ ଲେଖେ ରେ,

|| ୩୮ ||

ମଣିଷର ଜୀବ ଆତ୍ମା ମଣିଷର ଜୀବ ସେ
ଏ ମାଟିର ସତ୍ୟ ଓ ଶିବ ସେ ।

ମଣିଷଠୁ ଛିନ୍ନ ମୁଁ ଦୋଷି ରେ
ପାଶବିକ ରନ୍ଧ୍ର ରେ
ମୋ ଭିତରେ ବାହାରେ
ମଣିଷ ଜୀବନଲୀଳା ଲାଗିଥାଉ ଚିରଦିନ
ସୀମାହୀନ କଣାହାରେ !'
ଏବେ ବଡ଼ ସମ୍ପଦ ମଣିଷ
ଚଉଦିଗେ ଅଛି ମୋର ଦେଶରେ !
ବୁକୁତଳେ ତା'ର ମୁହିଁ
ପିବି ଖେଳ ଖେଳରେ ।

ଏ ଜୀବନ ମୋର ସତେ
କେତେ ଭଲ ଲାଗିବ '
କେତେ ଅମୃତ ଶିଖା,
ବୁକୁତଳେ ଜାଗିବ ।
ପୃଥିବୀର କେଉଁ କଣେ
କେତେ ସମ୍ପଦ ଧନ କିଏ ରହିଛି;
ସଭିଏ ମୋ ସମ୍ପଦ, ସଭିଏ ମୋ କୋଟିନିଧି,
ଏ ବିରାଟ ଧରଣୀର ସଭିଏ ତ ଅମୃତ ବାହିନୀ ।



# ଗୋଟାଏ ଜଗତ୍, କ୍ଷୁଦ୍ରତମ, ମହତ୍ତମ

ଡଃ କୁଞ୍ଜବିହାରୀ ଦାଶ



ଭାବିବାକୁ ଭଲ ଲାଗେ
ଭାବିବାର ନାହିଁ ପଦ କିଛି
ସୁମେରୁ ତୁଷାର
ଶ୍ମଶାନ ବଟର ଗୁଚ୍ଛ ।

ଅନ୍ତରର ନାଦ
ଶୁଣିବାକୁ ଲୋଭ ହୁଏ
କୁହୁ କେକା କାକଳି ମର୍ମର
ଶଙ୍ଖ ଘଣ୍ଟା ବଂଶୀ ବୀଣା
ଯେ ସ୍ୱର ଯାଇଛି ହଜି
ଦେଖାଯିବ ନାହିଁ ଯୋଉ ରୂପ
ଗୋଲାପରୁ ପଦ୍ମ ଭିନ୍ନ
ବନ ମଲ୍ଲିକାରୁ ପଳାଶ
ଆମ୍ରମଞ୍ଜରୀରୁ ଆଣି କାଶ
ସ୍ୱୟଂସମ୍ପୂର୍ଣ୍ଣ
ସ୍ୱରେ ସ୍ୱରେ ରୂପେ ରୂପେ
ତାରତମ୍ୟ ଉପଭୋଗ୍ୟ
ତେଣୁ ନାଭିଲା ଧନର ରାଗିଣୀ
ଆବୃତ୍ତି କରେ ମୁଁ ।

ଧନ ଏବା କ୍ଷମତାର ଅଭିଶାପରେ
ଯେତେ ଯେତେ ମାଟି ହୋଇଗଲେ
ଅତୃପ୍ତ ଆତ୍ମା
ଲୁଚିଛନ୍ତି ମୋର ଗୁହରେ
ଅଗଣିତ ମଣିଷର ପ୍ରେମ୍‌କୋ
ମୁଁ ଗୋଟାଏ ଅଜନ୍ତା ।

|| ୪୦ ||

ମୃତ ବନ୍ଦର—
ଚେ-ଲି-ତା-ଲୋ,
ଅଥବା
ହେଉ ପଛେ ମୁହୂର୍ତ୍ତର ଭୂକମ୍ପରେ ସୃଷ୍ଟି
ଗୋଟାଏ ଧଉଳି
ଅଗଣିତ ଅଶ୍ରୁରେ ଲିଖିତ ଅଲଭ୍ୟ ତା'ର ଲିପି,
ମର୍ମେ ମୋର ବନ୍ଧୁ ମର୍ମ
ଅଗଣିତ ମନସ୍କାମନା
ମୋ କାମନାରେ ନିଭୁଚ, ଜଳୁଚ
ସହରର ବିଜ୍ଞାପନୀ ବତ୍ତୀ ପରି ।
ଗୋଟାଏ ଜଗତ୍
କ୍ଷୁଦ୍ରତମ, ମହତ୍ତମ ।



# ଆଲବମ୍

ଡଃ କୁଞ୍ଜବିହାରୀ ଦାଶ



ମୋର ଅନୁରାଗରେ ଯେଉଁସବୁ ମୁହୂର୍ତ୍ତ ଜଳୁଥିଲା
ଲାଲ୍, ନୀଳ ବିଦ୍ୟୁତ ପରି, ବର୍ଣ୍ଣରାଗୀ ଟଜାପଢ-
ଲଘୁ ତାଙ୍କର ଡେଣା—ଚଞ୍ଚଳ ଫଗୁ ଆହା ଲିଭିଯାଇଛି,
ବୁଢ଼ିଆଣୀ ଜାଲର କାକରଫୁଲ—କିଶୋର ମୁଖର
ଗୋଟିଏ ହେଲେ ହସ ନାହିଁ, କେତୋଟି ପଞ୍ଜର
ଗୋଟିଏ ତରୁ—ଫୁଲ ଦେଖି ଭୁଲିଥିଲି ଇତିହାସ ତାର,
ଫଳ ଦେଖି ପୁଷ୍ପର ।

ଚିହ୍ନି ପାରେ ନାହିଁ ସେଇ ଛବି, ଶରତ୍ ସକାଳେ ଯାହା
ନେଇଥିଲି ଶିଉଳି ବନରେ, ପାହାଡ଼ ଚୂଡ଼ାରେ ଅବା
ଗୋଧୂଳିର ନଦୀର କିନାରେ, ଏପାତର ଇନ୍ଦ୍ରଧନୁ
ପାଣେ, ପ୍ରିୟାମୁଖ ହାସେ ନିଜକୁ ଉଜ୍ଜ୍ୱଳ କରି,
ଫୁଲମେଳେ ନିଜକୁ ଫୁଟାଇ, ଦେଖେ ଆଜି
ନାହିଁ—ନାହିଁ—ନାହିଁ ।

ଛବିର ପାହାଚସବୁ ଖର୍ଚ୍ଚି ପଡ଼େ, କାଳର
କଳଙ୍କ ଲାଗେ, ଲୋହିତ, ସବୁଜ ସବୁ ହୋଇଯାଏ
ପାଣ୍ଡୁପୀତ ମୋ'ର ଆଗରେ, ଝଡ଼ିବାର ଇତିହାସ
ଶୁଖିଲା ପାଖୁଡ଼ା, ମଣିଷ କି ରଖିବ ଖାଲି
ମୋର ଯାଦୁଘରେ ?

କଢ଼ିଟିଏ, ସେନେହ ଟିକିଏ ମୁହୂର୍ତ୍ତ ଦେଖିଲେ
ଝଡ଼ିଲେ ଟୋପିଏ ଲୁହ ପରଦୁଃଖେ, ଯାଣଲାଗି
ପ୍ରାଣ ବୋହିଗଲେ ଅପନ୍ତରା ଗମ୍ଭୀର କାନ୍ତାରେ,
ଫେରିଯାଏ ଅନ୍ତର ବିଶ୍ୱାସ, ମୁହିଁ ସେହି
ଆଦ୍ୟ ମାନବତା, ମୃତ୍ତିକାର ଶ୍ରେଷ୍ଠ ଫୁଲ,

ରେଖାରଙ୍ଗହୀନ ଯେତେ ପୁରାତନ ଛବି
ଧରଣୀର—ମୃତ ଯାହା ମୁମୂର୍ଷୁ ବା ଯାହା
ମରୁଭୂମି ମୁଣ୍ଡମାନେ ପୋଛିଦଏ—
ଶ୍ମଶାନର ଏଇ ଆଲବମ୍
ଜାଗ୍ରତ ଜୀବନ୍ତ କରେ କବିର କଲମ୍ ।



# ପ୍ରଥମା ନାୟକ

ସଚ୍ଚିଦାନନ୍ଦ ରାଉତରାୟ

●

ଆକାଶରେ ଫିକା ଜହ୍ନ—ସାବୁନର ଫେଣ ପରି ସଫା,
ଆଲୁଅ ଓ ଅଂଧାରର ମଧ୍ୟେ ସେ ଯେ କରିଅଛି ରଫା ।
ବହୁଦୂରେ ସଂନ୍ଧଶାଳେ ଶମିନିଷ୍ଟା କାଣେ ନିଜ ଗ୍ରାଏଁ,
ଧାନ-ସିଡ଼ି ନଦୀ ଟପି ଅଂଠଷ୍ଟାର ଜାକଗାଡ଼ି ଧାଏଁ ।
ପଡ଼ିଅଛି କବରାରେ ଏତେବେଲେ କାଂଦେ ଚକ୍ରବାକ୍
ହଠାତ୍ ଯେ ଦେଖାହେଲ ବହୁଦିନେ ପ୍ରଥମା ନାୟକ ।
ମୁଖ ତା'ର ବ୍ରଣଦୁଷ୍ଟ ହାତରେ ତା ଚମତ୍କାର ବ୍ୟାଗ୍
ଶୀର୍ଣ୍ଣ ସାଧା ଗାଲେ ଫୁଟେ ବ୍ୟର୍ଥତାର ଅକପଟ ଦାଗ ।
ତନୁ ତା'ର ରୋଗଜୀର୍ଣ୍ଣ, ବ୍ରଣେ ତା'ର ମ୍ଳାନ ମୁହଁଯାକ,
ଶ୍ଳଥ, ରୁକ୍ଷ ଦେହ-ଶିଖା ଢାଙ୍କିଅଛି ଖାକିର ପୋଷାକ ।

ଜାପାନୀ କାଗଜ ଫୁଲ ପରି ଦେହେ ବୟସର ଧୂଳି,
ପଚାରିଲି—'ଭଲ ଅଛ ?' କଣ୍ଠେ ମୋର ବିଷଣ୍ଣ ଗୋଧୂଳି ।
ହସିଲା ପ୍ରଥମା—
ଆକାଶର ନୀଳରେଖା ଗେରୁଆ ମାଟିର ନାଲି ସୀମା
ଛୁଏଁ ଯେଉଁଠାରେ—
ସେଇଠାରେ—ସ୍ୱପ୍ନ ଆଉ ବାସ୍ତବର ମୁହାଣ ସେ ପାରେ
ଦୁହେଁ ଆମେ ହୋଇଥିଲୁ ଠିଆ,
ଆମ ପଛେ ଶୋଇଥିଲା ଦୀର୍ଘ ଦୁଇବର୍ଷର ଦୁନିଆ—
ଦୀର୍ଘ ଦୁଇ ବର୍ଷର ଜଗତ—
ଧୂସର ଧୂମଳ, ଧ୍ୱାଂତ ଭୟଂକର ପୁଣି ଯୁଦ୍ଧରତ ॥
ବହୁ ଦୂରେ ଲମ୍ବକଣ୍ଟା ଘରେ ଏକ ହାରିକେନ୍ ବତୀ
ଜଳୁଥିଲା ଦୁକୁ ଦୁକୁ, ଭୟାନକ, ଭୟାନକ ଅଠ ।

ଭାଜିଗଲା ବାହାଘର, ଦର୍ଶନରେ ପଢୁଥିଲା ଏମ୍. ଏ.
କେ ଜାଣି ବା ପଡ଼ିଥିବ ଜୀବନରେ ଥରେ ଅଧେ ପ୍ରେମେ ।

ତାହାପରେ ସିନ୍ଧୁହାନୀ, ରଣଜିର, ପୁଣି ଗୁର୍ଖ-ଭେଦ
ଦର୍ଶନର ଗ୍ରଂଥେ ତା'ର ପକାଇଲା ଶର ପୂର୍ଣ୍ଣଚ୍ଛେଦ ॥
ଉଣିଶ୍ ଶ' ତେୟାଳିଶ ପୁଣି……
ଲୁଟି ନେଲା ଯାହା କିଛି ଥିଲା ବାକୀ; ସବୁ ଦେଖି ଶୁଣି—
ସମ୍ମୁଖରେ ନେଇଛି ଆଶ୍ରୟ
ଦରମାଠା ମଂଦ ନୁହେଁ, ଏଇ ତା'ର ଦୀର୍ଘ ପରିଚୟ ।
ଏଇ ଇତିହାସ

ଫେଉମା ନାୟକ ହସେ, ଓଠେ ତା'ର ସ୍ୱପ୍ନର ଆଭାସ,
ମୁହଁରେ ଖାକୀର ହସ, ଆଖିରେ ତା' ସାତର ଇସାରା ।
ଦୁଇପାଖେ ତ ବନ, ଗଡବାନ ନକ୍ଷତ୍ରର ଧାରା ।

ଆହା ! ହସୁ ହସୁ ଫେଉମା ନାୟକ ।
ଅଂଚଳ ତା ନାଇ ଦେହେ, ଦେଖିଅଛୁ ଖାକୀର ପୋଷାକ ॥

●

# ସ୍ୱଗତ

ସଚ୍ଚିଦାନନ୍ଦ ରାଉତରାୟ



ମୀଚ ବା ଅଜଂତା ନୃର୍ତ୍ତେ······
ଖାଲି ଏକ ଚିତ୍ରିତ କଳସୀ,
ତା'ର ଜଳେ ନାନା ତାରା
( ବିଚ୍ଛିନ୍ନ ଆକାଶ )
ସ୍ଥିରୁ ଚଂଦ୍ରମସୀ ।

ତା ଆଖିରେ ନିଜକୁ ମୁଁ
ଯେବେ ବା ଦେଖିଛି
ନିଜର ଦ୍ୱିତୀୟ ଅର୍ଥେ
ଖୋଜି ପାଇଅଛି ॥

ମୋର ପକ୍ଷେ, ମୋର ହୋଇ-ପାରନ୍ତା-ଯାହାରେ
ତା'ର ଅଙ୍ଗୀକାର ଜଳେ ସ୍ୱର୍ଣ୍ଣ ଅଂଗୀରେଖା ।
ସେ ମୁହୂର୍ତ୍ତର ଆଂଗୁଠିରେ ଅଂଗୁରୀଟି ପରି
ସେ ନ-ହୋଇ-ପାରିବା ସ୍ୱପ୍ନ ରହିଅଛି ଜଡ଼ି ॥

ଯଦି ସେ ଦେଇଛି ଧରା,
କିଂବା ଯଦି ବାଜିଛି ନୂପୁର,
ତାକୁ ନେଇ କ୍ରୀଡ଼ା କରେ
ମୋ ମନର ଏକାଂତ ଏକ୍ଲେଷ ॥
ଯଦି କେବେ ଜାଲ୍‌ ଦିନେ
ସ୍ୱର୍ଣ୍ଣ ବରଡରେ
ନୂଆ ଗ୍ରୀଷ୍ମା ପଡ଼େ ଆସି
ଅମେଘ ବିକାଳେ

।। ୪୬ ।।

ପଶ୍ଚତ ପ୍ରାଂଗଣରେ—
ତେବେ ସେଇ ଦ୍ୱିଖଣ୍ଡ ସତ୍ତ୍ୱରେ
ସନ୍ଦେହ ନ କର
ତୁମର ଅର୍ଧେକ ସତ୍ତ୍ୱ
ଯାହା ଚଂଦ୍ରପର

ଚିର ଅଂଧକାରେ ରହେ ମୋ'ଠାରୁ ସର୍ବଦା,
ସେଇ ଚଂଦ୍ରାବଳୀ
ଲଗି ଅଭିସାରୀ ବୋଲି
ଜାଣିବ ସୁଂଦରୀ ।।



# ଆଶ୍ୱିନ, ୧୯୫୮

ସଚ୍ଚିଦାନନ୍ଦ ରାଉତରାୟ



ଅଶୀଣ ତା ନିଜ ଋତୁ । ଅଶୀଣ ତା ନିଜର ସକାଳ ।
ଏ ଅବା ସିଂହର ଠାଣି, ସଂଗେ ସଂଗେ ତୁହିନ ମଙ୍ଗଳ,
ଚଟି ମୂଷା, ବାହନ ମୟୂର ଓ ଗାର୍ହସ୍ଥ୍ୟ ପେଚକର
ପରସ୍ପରେ ଅତିକ୍ରମ କରି ବହୁବର୍ଣ୍ଣ ବହୁସ୍ୱର ମେଳ !
ସମସ୍ତର ଆର୍ଥିକ୍ ସୋପାନେ, ନବାନ୍ନର ଆସନ୍ନ ଲଗ୍ନେ
ଏ ଆଶ୍ୱିନ ଦେଖାଇଏ ଅବସ୍ଥାର ଦୁଇ ପର୍ଯ୍ୟାୟର-
ଠିକ୍ ମଝି ଗ୍ରାମେ ।

ମୋ ଶିରର ପକ୍ଷୀ-ରକ୍ତେ ଇଂଦ୍ରନୀଳ ଏଷା ଦା ଫୁଟାଏ
ଯାଚେ କ'ଣ ଧନ-ଧାନ୍ୟ ଗୋପ ଲକ୍ଷ୍ମୀ ଶ୍ରାଦ୍ଧ୍ୟା ଆୟୁ
ଆମଳକୀ ଧାନ୍ୟେ
ସମସ୍ତର ଦାନପତ୍ର — ଯାହା ମୋର ଆଂଗୁଠିର ଫାଂକେ
ଥର ଥର ବାଜି ଉଠେ, ଆଉ ଯାହା ଏ ମୁହୂର୍ତ୍ତର ସ୍ୱରଣପୃଷ୍ଠାଂକେ
ଉନ୍ମାର୍ଗର ସ୍ତୁପ ରଖେ । ରଖେ ଏକ ବଳର ପ୍ରତିମା
ଭିନ୍ନ ଜଳବାୟୁ ମଧ୍ୟେ, ଦେଶ ଏଠି ତ୍ରିସତ୍ତ୍ୱର ସୀମା !
ତେବେ ଏଠି ମୁହିଁ ଭୁଲେ, ଖାଲି ଏକା ଏକା,
ମୋ ବିଶେଷ ସାମାନ୍ୟକୁ, ମୋ ଭୂମିର ନିକଟ ଭୂମିକା ?
ଏ କି ଖାଲି ମାର୍ଗ ? ନା ଦେଶୀୟ ? ନା ଯୁକ୍ତ ସମନ୍ୱୟ
ମୋ ଶାସ୍ତ୍ରୀୟ ସଂଜ୍ଞା ସଂଗେ ମୋ ଲୌକିକ ସତ୍ତ୍ୱର ଦ୍ୱନ୍ଦ୍ୱ !!

ଏଠାରେ ଏ ଫୁଲସିଢ଼ି, ଏଠାରେ ଏ ପୂର୍ଣ୍ଣ ଉତ୍ତରଣ
ସ୍ୱସ୍ଥାପନ୍ନ ଆପଣାର 'ଅହମ୍'ର କ୍ଷମ—
ଏ ହେଉ ବାହନ ତେବେ, ଲକ୍ଷ୍ୟ ହେଉ ମୋର ବହିର୍ଭୂତ
ସତ୍ତ୍ୱର ସିରସ୍ତା ଦେଇଁ ଯେ କେତୋଟି ଉଜ୍ଜ୍ୱଳ ମୁହୂର୍ତ୍ତ ।।

ଆଶ୍ୱିନ ଆସିବା ହେଉ, ଆଶ୍ୱିନ ବସିବା ହେଉ ବାରଂଡାରେ
ସୁଟଖ କେଦାରରେ,
ନାରଂଗୀ କ୍ଷୋଟନ୍ ପନ୍ଥେ, ଅବା ଲତାଗୁଚ୍ଛେ, ଅବା ନଦୀତଟରେ ।
ମୋର ପ୍ରୀତ ମୋର ନଦୀ, ମୋର, ଶସ୍ୟ ମୋର ଶକ୍ତ,
ମୋର ପକ୍ଷୀମନେ

ହେ ନୂତନ ଋତୁ ଆସ ନୂତନ ଅୟନେ,
ମୋ' ଆତ୍ମାର ଗୈଶକ ବୋଧନେ ।

ଏଠାର ପ୍ରାଚୀର ଦେହେ, ଏଠାର ଆକାଶେ,
ଏଠାକାର ସହର, ପଲ୍ଲୀରେ,
ମୁଁ ଦେଖୁଚି ଛଳ ଛଳ, ଢଳ ଢଳ ଅଗଣନ ନୀଳ ଶୈଶବରେ ।
ଆଉ ନଦୀ ପରି ପ୍ରାଣମୟୀ ଦକ୍ଷିଣାସ୍ୟା ମାତୃମୂର୍ତ୍ତିମାନ,
ଦୀପଶିଖା ପରି ଦେହ, ଅନ୍ନକୂଟ ପରି ଅନ୍ଧା ମାତୃସ୍ତନ ।
ଅସ୍ପଷ୍ଟ ଆକାର ସବୁ, ରୂପସବୁ କେଉ କେଉ ପ୍ରଦୀପର ଶିଖା,
ଅନେକ ଘଟଣା ଆଉ ଅବସ୍ଥାର ନାଟ୍ୟରୂପ ଯେଉଁଥିରେ ଲେଖା;—
ଇତିହାସ ହାତୁଁ ଯାହା ଅଳପକେ ଖସି ଯାଇ ଫିଟି
ଆଲୋଳ କରୁଛି ଆଜି ହୃଦୟପୁର, ଚେତନାର କୋଠି ।
ପୁଣି ଏ ତ ନିଭିଯିବ । ଦେଖାଦେବ ଅନ୍ୟ ଦିନ, ଅନ୍ୟାନ୍ୟ ଶବଙ୍ଗ
ଭୁଇଁତଳେ କେଉଁ ମୃତା ସାମ୍ରାଜ୍ଞୀର କଂଠଲଗ୍ନ ରତ୍ନଖଂଡ ପରି

ଅକ୍ଷୀଣ ପ୍ରବେଶ ହେଉ ଅକ୍ଷୀଣ ଆସିବା ହେଉ
ଆନଂଦର ଚେତନାର ଘରେ ।
ଅକ୍ଷତ ରଙ୍ଗର ମେଘ, ସାଦା ହଂସପଲ, ସାଦା ଯୂଇଫୁଲ
ତା'ର ପ୍ରତିଧ୍ୱନି କରେ ॥



# ମୂର୍ତ୍ତି ଓ ମନ୍ଦିର

ଜ୍ଞାନୀନ୍ଦ୍ର ବର୍ମା



ଶାସ୍ତ୍ରର ବାହାରେ ପୁଣି ତମେ ଏ ଯେ ଭୁଲ
କହ ହେ ଈଶ୍ୱର,
ତମକୁ କି ପାଇଛନ୍ତି ସତେ ଲୋକ କେତେ
ଆମ ଏ ବିଶ୍ୱର ?

ତମକୁ ଯେ ପାଇ କିସ କରି ଯାଇଛନ୍ତି
କହ ଆହେ କହ,
ତମ ଭଳି ଧନ ପାଇ ସେ କି ପାଇଛନ୍ତି
ନାଶି ଦୁଃଖୀ-ଲୁହ ?
ତବ ନାମେ ଅନୁଷ୍ଠାନ ଯାହା ସେ ଗଢ଼ିଲେ
କାହିଁ ହେ ମଙ୍ଗଳ,
ଦୀନ ଏକ କୃଷକର କୁଟୀରୁଁ ତ ତାହା
ନୁହେଁ ମହତ୍ତର ।

ଦୁନିଆରେ ବୈଷମ୍ୟର ସ୍ଥାନ ଯଦି ଥାଏ
ତାହା ତ ମନ୍ଦିର,
କାରାଗୃହ ମୋ ବିଚାରେ ଏହାଠାରୁ ଭଲ,
ଏହାଠୁଁ ରୁଚିର ।
ଆର୍ଦ୍ର ଆଖେ ବନ୍ଦୀ ବସି ନିଜ ପାପ ନାଶେ,
ଢାଳେ ଗ୍ଲାନି ନୀର,
ଏଠି ଯେ ମଞ୍ଜୀର ବାଜେ ପ୍ରତ୍ୟୂଷ ପ୍ରଦୋଷେ
ବ୍ୟଭିଚାରିଣୀର ।
ତେବେ ତମେ କିସ କର ଏ ମନ୍ଦିରେ ବସି
ମୁଁ ପଚାରେ ଥରେ;
ଏହି କିବା କାମ ତବ ମଣିଷକୁ ନେବା—
ପିଚ୍ଛିଳ ପଥରେ ?

॥ ୫୦ ॥

ପରକାଷ୍ଠା ତନ୍ତ୍ରୁ ତବ ଅଙ୍ଗେ ନଶ୍ୱରତା
ଲଭେ ପ୍ରାଦୁର୍ଭାବ,
ସୀତାର ଦହନ ତବ ସତୀ ଦାହେ ଯଥା
ହୋଇଲା ସମ୍ଭବ ।
ତମେ ଥିବ, ଥିବ ପୁଣି ତମ ଇତିହାସ,
ଥିବେ ପ୍ରବଞ୍ଚକ,
କୋଟି ଯୁଗେ ନ ପାରିବ ଭାରତ ଉଦ୍ଧାର
କୌଣସି ପାବକ ।

ଭାରତୀଆ ବନ୍ଧୁ ନାମ ଗାଏ ଯେଉଁ ଦେଶେ,
ମୃଗ କରେ ସ୍ତୁତି,
ଅତି ଭଣ୍ଡ ଯେଉଁ ଦେଶେ ସାଧୁ ହୋଇପାରେ
ମାଖିଲେ ବିଭୂତି,
ବୃକ୍ଷରେ ସିନ୍ଦୂର ବାନ୍ଧୁଁ ତମେ ଜନ୍ମ ନିଅ,
ସେ ଦେଶୁ କପର,
ନିର୍ବାସିତ ତମେ ହେବ, ହେ ପାଷାଣ-ପ୍ରାଣ,
ବୃକ୍ଷମସ୍ତୁ ହର ।
ମନ୍ଦର ଭାଙ୍ଗିବ ସତ ଶିଳା ତ ରହିବ,
ରହିବ ତ ତରୁ,
ତେବେ କିବା ଏହି ଦେଶେ କରିବାକୁ ହେବ,
ଆରବର ମରୁ ?
ବେଦୁଇନ ପରି ପଛେ ଜୀବନ କାଟିବା
ତାହା ବରଂ ଶ୍ରେୟ,
ଧ୍ୱଂସ ହେଉ ଅନ୍ଧକାର କୁମ୍ଭୀପାକ ବାସ…
ଏ ଜୀବନ ହେୟ ।



# ଚନ୍ଦ୍ରଲୋକର ସନ୍ଧ୍ୟା

ବିନୋଦଚନ୍ଦ୍ର ନାୟକ



ସନ୍ଧ୍ୟା ଆସେ ନାରଙ୍ଗ ଦିନାନ୍ତେ
ନିବିଡ଼ ତାରକା ଦୀପ ତୋରଣର ପ୍ରାନ୍ତେ
ଏ ପ୍ରାନ୍ତର ଚନ୍ଦ୍ରର ପ୍ରାନ୍ତର
ଏ ପ୍ରାନ୍ତର ଗୈରିକ ମରୁଭୂ,
ଗୈରିକ ପ୍ରାନ୍ତର ଶେଷେ କୃଷ୍ଣଶିଳାକାଶେ,
ତୁମର ପୃଥିବୀ ଉଏଁ
ମେଘ କଳଙ୍କିତ
ସାଗର ମେଖଳାବନ୍ତୀ ତୁମର ପୃଥିବୀ
ଶ୍ୟାମ, ନୀଳ ସ୍ନାତ ।
ଶନିର ଅସ୍ତବଳୟ କୁଙ୍କୁମ ରଞ୍ଜିତ
ପଠାଏ ଏ ପ୍ରାନ୍ତେ
ଏ ପ୍ରାନ୍ତର ଆଗ୍ନେୟଗିରିର
ଛଟା ଚନ୍ଦ୍ରାଙ୍କିତ ।
ଅରୁଣ କୁଙ୍କୁମ,
ପ୍ରଗଲ୍‌ଭ ବିଳାସ ନାହିଁ ଆଣେ ଏ ପ୍ରାନ୍ତରେ !
ଏ ପ୍ରାନ୍ତରେ ଶ୍ମଶାନର ନିର୍ଜନତା ସାଜି
ତୁମର ପୃଥିବୀ ଉଇଁଆସେ ।
ଉର୍ଦ୍ଧ୍ୱ ଦିଗ ଶ୍ୟାମଳ ଆଲୋକ
ନିଷିକ୍ତ କରେ ଏ ପ୍ରାନ୍ତ,
ଏ ପ୍ରାନ୍ତର ପ୍ରେତ ଚିତ୍ରଭୂଇଁ !
ଦୂରଂଶୀଳା ମନ୍ଦିର ସମ ।
ଦୀପିତା ପୃଥିବୀ
ବିଷପାଣ୍ଡ ଜ୍ୟୋତ୍ସ୍ନାତଳେ ମାୟାବିନୀ ଛବି
କରଇ ସୃଜନା,
ହେଇ ଦୂରେ, ଭୂଖଣ୍ଡ ଲାଞ୍ଛନ ତଳେ

ଗୁଲେ ସମ୍ପ୍ରସାରଣ ଯୋଜନା
ଛତ୍ରପାନ୍ଥ ସମ, ନନ୍ଦୁଁ ମଧୁବିନ୍ଦୁ ସ୍ରବେ
ଗୁଲନାର ଖଣ୍ଡଗର୍ଭେ;
ମଧୁଚକ୍ରେ ଯେବେ
ମକ୍ଷିକାସଙ୍ଘର ବସେ ସନ୍ଧ୍ୟୋଗସ୍ଥାନ ଆନ୍ଦୋଳନ
ମାରଣ ମନ୍ତ୍ରର ହୁଏ ଆଗ୍ନେୟ ବର୍ଷଣ ।

ଏଇ ତ ପୃଥିବୀ
ଏକଦା ଆଦମ୍ ଓ ଇଭ୍ ସ୍ୱର୍ଗ ଏଥେ ଧୃଜ
ସର୍ପ ଶୟତାନ ହାତେ ଦେଇଗଲେ ଗୃହ
ଭଣ୍ଡାରଘରର
ଶୟତାନ ନିଜେ ବିଶ୍ୱାମିତ୍ର ସମ ତହିଁ
ଶୃଙ୍ଖଳାର ଅନ୍ଧସ୍ୱର୍ଗ ସୃଜେ ।

ଏ ଚନ୍ଦ୍ର ପ୍ରାନ୍ତରେ
ବିମୂର୍ତ୍ତ ପୃଥିବୀର ନବ ଅଭିସାରେ
ଅଭିଯାତ୍ରୀ ହୁଏ ଆତଙ୍କିତ
ଇଥରର ସ୍ତରେ ସ୍ତରେ
ଭସିଆସେ ଶୁଣ
ହିଂସା ଆଉ ଶୋଷଣ ସଙ୍ଗୀତ !

ନୈର୍ଋତ କୋଣରେ
ଧୂମକେତୁ ପ୍ରଦକ୍ଷିଣ କରେ
ଅସ୍ତମିତ ସୂର୍ଯ୍ୟ
ଚିରଦୀପ୍ୟ ଧ୍ରୁବ
ପ୍ରିୟ ସମ୍ଭାଷଣ ଦିଏ ସପ୍ତର୍ଷି ତାରାରେ ।

ମୃତ ଏ ପ୍ରାନ୍ତର ଛାୟା ସୁପ୍ତ ଗାଢ଼ ନୀଳେ
ଏ ଆକାଶେ ଏ ମୃତ୍ତିକା ତଳେ
ଅଶରୀରୀ ଆତ୍ମା ଲକ୍ଷ ବିଳପେ ଆକୁଳେ ।

ସେ କେଉଁ ଚନ୍ଦ୍ର ସଭ୍ୟତା ଚନ୍ଦ୍ର ଇତିହାସ
ହୁଏତ ସାମ୍ରାଜ୍ୟପନ୍ଥୀ ଅତ୍ୟାଚାରୀର ଧର୍ଷଣ-ହୁତାଶ
ଅଦ୍ୟାପି ରହିଛି
ଦୁଃସ୍ୱପ୍ନ ସମାନ ବ୍ୟାପୀ;

କେହ୍ବ ନାହିଁ ଗାଏ
ସେ ଗୌରବ ଗାଥା ଆଜ ହାୟ !
ଏ କ୍ରାନ୍ତି ପୃଥିବୀ
ପର୍ଯ୍ୟନ୍ତ କଳ୍ପର ପରେ ଅଗ୍ନିସ୍ନାନ ଲଭି
ମୃତ ହେବ ଯେବେ ଚନ୍ଦ୍ରସମ
ପାଲଟିବ ମରୁଭୂରେ ସଜୀବ ସବୁଜ;
ଶୁଷ୍କ ମହାସାଗର ପଣଖା
ହେବ ଯେବେ କଳଙ୍କର ରେଖା ବକ୍ଷତଳେ,
ଆହ୍ନିକ ଗତି ପାସୋରି ନିଜ ପଥ କକ୍ଷେ
ଏ ପୃଥିବୀ କରୁଥିବ ସୂର୍ଯ୍ୟ ପ୍ରଦକ୍ଷିଣ
କେ କରିବ କର୍ପୂରମାଳାରେ ତୁମ ଅଭ୍ୟର୍ଥନା
ଆଉ ଜୟଗାନ !!
ସେ ମୃତ ପ୍ରାନ୍ତରେ ଭ୍ରୂଗୁତ୍ରିର
ଅନ୍ୟ ଗ୍ରହୁଁ ଅବତରି କେଉଁ ଅଭିଯାତ୍ରୀ ନିକ
ଜିଜ୍ଞାସିବ ଏହି ପ୍ରଶ୍ନ ତହିଁ ପୁନର୍ବାର—
ଚନ୍ଦ୍ରସ୍ନାନ ନଭେ ରଖି ଆଖି,
କେ ଦେବ ଉତ୍ତର ତା'ର
ଅସୀମିତ ନୀଳ ତା'ର ସାକ୍ଷୀ !!
ଏ ଚନ୍ଦ୍ର ପ୍ରାନ୍ତରେ
ଦ୍ୱାଦଶ ଗ୍ରହ ଆଲୋକ ବର୍ଷର ସ୍ୱପ୍ନରେ
ଦେଖେ ମୁଁ ଚକିତେ
ହୀରକ କର୍ଣ୍ଣିକା ଶଯ୍ୟା କ୍ଷିପ୍ତ ଇତସ୍ତତେ;
ଯୋଜନ ପ୍ରଶସ୍ତ ଏକ ସ୍ୱର୍ଣ୍ଣଶିଳା ପରେ
ବସି ଅହେତୁ କୌତୁକେ
ମୁଁ ଦେଖେ ପୃଥିବୀ ତୁମ
ଚଳେ ଅସ୍ତ ଶିଖେ,
ନୀଳାର ଗୋଧୂଳି
ସ୍ଥିଏ ଚନ୍ଦ୍ରଗିରି ।



# ଗ୍ରାମପଥ

ବିନୋଦଚନ୍ଦ୍ର ନାୟକ



—୧—

ଦୂରେ ନାଳ ବଣ ଆକାଶେ ଶୁଣାଏ
ମାଟିର କବିତା କି ସେ
ଏ ଗ୍ରାମର ପଥ ତହିଁ ଦିଗନ୍ତେ ମିଶେ ।
କ୍ଷେତ ପରେ କ୍ଷେତ,
କାଶଫୁଲ ଆଜି
ବେଣାରେ ଜଟିଲା ପାଟ;
ପାଟ ପରେ ବଣ ପାଶ ହେଲେ
ମାମୁଁ ଘର ଗାଆଁ ଦିଶେ ।

—୨—

ପଥର ସେ ପାଖେ ବୁଣା ହରଡ଼ ଓ ବୁଟ,
ଆଗରେ ଘୁରଣପଡ଼ିଆ ଗୋରୁର ଗୋଠ,
ଶିମୁଳି ଶାଖାରେ
ବାହୁନେ କପୋତୀ
'ଉଠ୍ ପୁତ ଉଠ୍—
ଉଠ୍ ପୂରିଲାଣି ମାଣ';
ଏ ପାଖେ କଇଁର ପୋଖରୀ ଗାଧୁଆ ତୁଠ ।

—୩—

ଭୂଆସୁଣୀ ମାନେ ଧାଦର ପାହୁଡ଼ ଏଥି
ମୁକୁଳା ବେଣୀରେ ପଖାଳେ ଦେଇଣ ମେଥି;
ନଣନ୍ଦ ତାହାର
ଅଧିକ ଚତୁରୀ
ଗାଲରେ ହଳଦୀ ମାଖେ
ହଲଲ ପାଣିରେ ମୁହଁର ଗ୍ରୁଇକ ଦେଖି ।

—୪—

ପୋଢଣାଗ ଅଙ୍ଗ      ପାଣିକଖାରୁର ଲତା
ମାଡ଼ି ମାଡ଼ି ଆସେ      ଟପିଲାଣି ଘର ମଥା,
ସଜନାର ଶାଖୁଁ
ଝଁଶପଡ଼େ କେତେ ଫୁଲ
ବାଡ଼ ଦେହେ ପଶି      ଅପରାଜିତାର ବଣ୍ଟା ।

—୫—

ସେଇ ପଥେ ଫେରେ      ଗ୍ରାମ ବଧୂସାଥ
ସକାଳ ସ୍ନାହାନ ଏକା
ଧୂଳରେ ଆଙ୍କି      ସଜଳ ଚରଣ ରେଖା
ମାଆ ବୋଲି ଥରେ
ଡାକିବାକୁ ପାଣ ଲୋଡ଼େ,
ପୃଥ୍ବୀର ସମ      ସହନଶୀଳତା ସେ
ଅସୀମ କରୁଣାବନ୍ତ
ନୟନ ଶଲକେ ଯ୍ନାର ବେଦନା ଲେଖା ।

—୬—

ଏ ପଥେ ଗ୍ରାମର ତରୁଣ      ବିଦେଶେ ଯାଏ
ଲେଉଟେ ପଥକୁ      ଲଳନା ଘରଣୀ
ଆକୁଳେ ଅନାଇଁ ଥାଏ ।
କି ବାରତା ତାରେ ଆଣେ
କିଏ ଜାଣେ
ଅଧାର ଲେଖି ଏ କାକ !
ଏ ଗ୍ରାମ ଦେବତା
ସେ ବ୍ୟଥା ବୁଝେ କି ହାୟ !

—୭—

ଏ ପଥରେ ଗ୍ରାମେ      ପ୍ରବେଶ କରଇ ବଧୂ
ବାପର ବୁକର ମମତା      ମୁଖର ମଧୁ
ମଅ କୁଁଅ ନାଭ ନାଡ଼ୁଣୀରେ ରଖି
ମଶାଣି ଏ ପଥେ ଫେରେ
ଆସିବା ଜନର ସାକ୍ଷୀ ଏ ପଥ
ଫେରିବା ଜନର ବନ୍ଧୁ ।



ଜହ୍ନ ଏ ପଥେ ଢାଳଇ ରଜତ ମାୟା
କୁମାଶ ଦଳର ମିଳିତ କଣ୍ଠୁ
ସଙ୍ଗୀତ ଉଠେ ଆହା,
ଧାନକ୍ଷେତେ ଚଳେ
କୃଷକ ତରୁଣ
ସ୍ୱପ୍ନ ଶସ୍ୟନ ପାଇଁ
ପ୍ରାନ୍ତର ଡେଇଁ ଧାଏଁ ଦେଖ ଦେଖ
ଭସାଣି ମେଘର ଛାୟା ।



ଧୂଳିଧର ଗୁଡ଼ି ଏ ପଥେ ଚଳଇ
ଶାଶୁଘର ଗାଆଁ ଝିଅ
ମାଆର ପଣତେ ବନ୍ୟା ରଚଇ
ଅମାନିଆ ଆଖି ଲୁହ ।
ଏ ପଥର ମୂଢ଼ ଚେତନା ଲେଖଇ
ସେ କେଉଁ ଜନମ କଥା ।
ଛାତି ଫାଟିଯାଏ କ୍ରନ୍ଦନେ ତା'ର
ବିଧାତା କି ପାଇଁ ଏ ବିଧାନ କଲା ଲୁହ ।



ଶ୍ୟାମ ପ୍ରାନ୍ତରେ ଉଲଙ୍ଗ ଶିଶୁ ସମ
ଏପଥ ଘୁମାଏ,
ନୀଳନଭେ ଯଥା
ଛାୟାପଥ ମନୋରମ ।
ଗ୍ରାମ ଝରଣାରେ
ଲଙ୍ଘି ଏ ପଥ
ସରଗ ସୀମାକୁ ଧାଏଁ
ସନ୍ନ୍ୟାସୀ ସେ କି, ବିତରି କରୁଣା ଧନ ।

— ୧୧ —

ବନ୍ଦନା ତତେ କରଉଁରେ ଗ୍ରାମପଥ !
ବାଲକ ବେଳର ହେ ମୋ ପ୍ରିୟ ସାଥୀ
ଅୟୁତ ଦଣ୍ଡବତ,
ତରୁଣ ଦିନର
କେଳିକୁଞ୍ଜ, ତୋ—
ତନୁ କର୍ପୂର ରେଣୁ ;
ତୋର ବେଣୁବନ ବିତାନେ ମୁଁ ଆଜି
କ୍ଲାନ୍ତ ଦିବସ ଯାପନରେ ଉପଗତ !

— ୧୨ —

ଭିକ୍ଷାଂଶୀ ପ୍ରାଣ ପୀଡ଼େ ମତେ ଅହରହ
ପାଥେୟ ବିହୀନ ପଥିକ ମୁଁ ମଣେ
ଯାହା ଏ ଦୁର୍ବହ,
ଖଇ ଓ ତୂଳାରେ ଶୁଭ୍ର କରି ତୋ ତନୁ
ରାମ ନାମ ସତ ମନ୍ତ୍ରେ ଚଳିବ
ତୋ ତୀର ଶ୍ମଶାନେ
କେବେ କହ କେବେ କହ ।



# ଚମ୍ପାଫୁଲ

ଗୁରୁପ୍ରସାଦ ମହାନ୍ତି

●

ଚମ୍ପାଫୁଲ ମହକରେ ବାଟଭୁଲି ସମୁଦ୍ରର ଢେଉ
ଆସିଥିଲା କୂଳ ଡେଇଁ ଶୁଖିଥିଲା ଭଗବାନଙ୍କ ଓଠ
ପଥର ତରଳି ଥିଲା, ମଶାଣିର ଭୂତପ୍ରେତ ଓଢ଼
ରଜବତୀ କନ୍ୟା ଲାଗି ଯୋଗୀ ଥିଲା ମଦନରେ ମାଠ ।

ଚମ୍ପାଫୁଲ ହାତେ ଧରି ମନାସିଲା ଯାଦୁକଣ୍ଠ ଥରେ
ପଥର ପାଲଟି ହେଲା ରଜାପୁଅ, ହାଡ଼ସବୁ ହେଲା ମୁକ୍ତାଫୁଲ
ରଜାଝିଅ ବେଣୀଫୁଲ ଖସିଗଲା ସୁଏ ସୁଏ ଭାସି
ଗୋଟିଏ ଫୁଲରେ ପୁଣି ହେଲା କୋଟି ମଣିଷର ମୂଳ ।

ଚମ୍ପାଫୁଲ ମହକରେ ପଡ଼େ ସେ ଯେ ଦାରୁଣ କୁହୁକ
ରକ୍ତ ଯାଏ ନିଆଁ ଲାଗି, ଓଠ ଆଉ ନିଶ୍ୱାସରେ ନିଆଁ
ଓଠ ଆଉ ନିଶ୍ୱାସରେ ନିଆଁ ସେ ଯେ ଦେହେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେ ଯେ ବଣ ନିଆଁ, ସବୁଯାଏ ଛିନ୍ନଭିନ୍ନ ହୋଇ,
ପୃଥିବୀ ଓଠରେ ଲୋଟି ପୋଡ଼ିଯାଏ ଜଳିଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।

●

# ଆଖିର କପୋତ ମୋର

ଗୁରୁପ୍ରସାଦ ମହାନ୍ତି

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧାପାଇ ସ୍ପନ୍ଦନ ଫେରିଆସେ ଏହି ପୃଥିବୀକୁ
ଯେଉଁଠାରେ ତୁମେ କର ସ୍ପନ୍ଦନ ବିଜନ ପ୍ରତୀକ୍ଷା
ଜରା ମୃତ୍ୟୁ ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।
ସମୁଦ୍ରର ଢେଉ ସବୁ ଶ୍ରେଷ୍ଠ ଶ୍ରେଷ୍ଠ ହାତ ପାପୁଲିରେ
ସ୍ଥବିର ବାଲିର ଦେହ ଯେବେ ଦିଏ ଆଉଁଳି ଆଉଁଳି
ମୁଁ ଯାଇ ବିବ୍ରତ ହୋଇ ଭେଦି ଖରା ଦ'ପହରର ତପ୍ତ ଧୂସରତା
ମୋର ପିତୃପୁରୁଷର ସ୍ମୃତି ଖୋଜି ତୁମର ଏ ବିବର୍ଣ୍ଣ ଦେହରେ—
ତୁମେ କୁହ କଥା କୁହ ଘାସ ଆଉ ପତରର ଗୋପନୀୟ କଥା
ଘାଟିବଣ ଜଙ୍ଗଲର କଥା ଯେତେ ଶିଉଳି ଶାମୁକା ଆଉ ସମୁଦ୍ରର କଥା ।

ବିଷଣ୍ଣ ଗଡ଼ରେ ଛିନ୍ନ ବଉଦରେ ବିବର୍ଣ୍ଣ ଜହ୍ନର
ଏ ପାରିରୁ ଖସିଯାଇ ସେପାରିରେ ମରିଯିବା କଥା—
ଚଇତର ଜୀର୍ଣ୍ଣ ଦେହ ଏ ବାଲିର ଶ୍ରେଷ୍ଠ ଶ୍ରେଷ୍ଠ ଭଉଁରୀ ଭିତରେ
ଏପାଖ ସେପାଖ ଯାଏ ଉଡ଼ି ଉଡ଼ି ତୁମେ ନିଅ ସାଉଁଟି ସାଉଁଟି
ତୁମେ ପୁଣି ଭଲପାଅ ତୁମେ ପୁଣି ହାତ ଧରି ଡାକ
ତୁମର ଆତ୍ମା ବା କାହିଁ ? ମୋ ଦେହ ବା ଜୀବନ୍ତ କେଉଁଠି ।
ମେଘର ଇସ୍ପାତ ଦେହ ଚିରି ପୁଣି ବାଧାପାଏ ସେଠି ତୁମ ମନର କପୋତ ।
ଆଖିର କପୋତ ମୋର ଫେରିଆସେ ଯେତେବେଳେ
ଆକାଶର ଭ୍ରାନ୍ତ ପାରି ହୋଇ
ତୁମର ଦେହରେ ଏହି କ୍ଳାନ୍ତ ଆଉ ଶୋକଶୋଷ ଉତ୍ତେଜନା
ଖେଦ ଆଉ କୋହର ଭିତରେ
ମୋ ଦେହର ସ୍ୱପ୍ନ ଧରି ବୋହିଯାଏ ସମୟର ନଈ ।
ନିସ୍ତବ୍ଧ ଦ'ପହରେ ପତ୍ରଝଡ଼ା ଶୁଭେ ନାହିଁ ଖରାର ନିଶ୍ୱାସ,
ଝାଉଁବଣ ମିଶିଯାଏ ଧୂଆଁ ହୋଇ ଆକାଶ ଭିତରେ
ମନେ ମୋର ପଡ଼େ ନାହିଁ କେବେ ମୋର ଆଖିର କପୋତ
ତୁମର ସନ୍ଧାନ ଦିନେ ପାଇଥିଲା କଟକ ବା ଉଜ୍ଜୟିନୀ ସହର ପ୍ରାନ୍ତରେ ।

# ଅକ୍ରୂର ଉବାଚ

**ଗୁରୁପ୍ରସାଦ ମହାନ୍ତି**



ସନ୍ଧ୍ୟା ଆସେ ଦୂରଗତ କ୍ଳାନ୍ତ ବାଟୋଇର
ନିସ୍ତେଜ ଆଖିରେ ଆଣି ଅପରନ୍ତ ବାଟର ନିରାଶା ।
ସେଦିନ ଠିକ୍ କ୍ଳାନ୍ତ ତା'ର ଆଖିପତା ଘୋଡ଼ାଇ ସନ୍ଧ୍ୟାର
ଛାଇ ଆଉ ବିଷଣ୍ଣତା ଭାରି ହୋଇ ଆସୁଥିଲା—
ଧୂଳି ଆଉ ଖାଲ ଢିପ, ଦିନକର କ୍ଳାନ୍ତ ଆଉ ଖରା
ଠକ୍ ଠକ୍ ଘୋଡ଼ା ଟାପୁ , ଧୂଳି ଆଉ ଘୋଡ଼ାମୁହଁ ଲଗାମ୍‌ରେ ଫେଣ
ଆଉ ତା'ର ଥକା ଦେହ ଗଣ୍ଠି ଗଣ୍ଠି ହାଡ଼ ଓ ଚମରେ
ବାଟର ନିରାଶା ଆଉ ରକ୍ତମାଂସ ସ୍ନାୟୁର ବିରକ୍ତି ।
"ତୁମେ ମୋର ଏ ଦେହର ଚିରନ୍ତନ ଏ ଯାତ୍ରାର ଧୂସର କ୍ଳାନ୍ତିରୁ
ଆଜି କ'ଣ ମୁକ୍ତି ଦେବ ସମସ୍ତ ଓ ସମସ୍ତର ସଂଗ୍ରାମ ଓ ରକ୍ତପାତଠାରୁ ?
ତୁମେ ଯଦି ମୁକ୍ତି ଦିଅ ମତେ ଆଜି ମୋ ଦେହର ପୁନର୍ବାର ଦ୍ୱିରୁକ୍ତି ଭିତରୁ ।
ସାରଥିର ସାର୍ଥକତା ହୁଏତ ଆଜିର ଏହି ଯାତ୍ରାରେ ମୋ ତୁମର ସହିତ
ହୁଏତ ବା ସାର୍ଥକତା ତୁମର ହାତର ଶଙ୍ଖ ଚକ୍ର ଚିହ୍ନ ତଳେ
କିନ୍ତୁ ମୋର ବନ୍ଧୁ ଜନ୍ମ ଜନ୍ମାନ୍ତର କାମ କ୍ରୋଧ ଲୋଭ ମୋହ ଜରାମୃତ୍ୟୁ ପର
ତୁମର ଏ ଆଶୀର୍ବାଦ ଅନ୍ୟ ଏକ ପିପାସା ଓ ଦେହର ଅନ୍ୟ ଉପାଦାନ
ତେଣୁ ମୋର ଭଗବାନ ଏହି ଯାତ୍ରା ଶୁଭ ହେଉ ତୁମର ଓ ମୋର
ପୃଥିବୀର ଏହି ଦେହ ଘୋଡ଼ାଇ ରଖିଚ ଯଦି ତୁମର କାରୁଣ୍ୟ ଆଉ ନିଷ୍ଠୁରତା
କ୍ଷମା ଆଉ ତୁମର ସଂହାର
ଏ ଯୁଗର ଏ ଗ୍ଳାନିରେ ତୁମର ଯଦିବା ଏଠି ସମ୍ଭବନା
ତଥାପି ଏ ଯାତ୍ରା ମୋର ଶୁଭ ହେଉ ପୂର୍ଣ୍ଣ ହେଉ ତୁମର କ୍ଷମାରେ
ଦେହର ସୀମାନ୍ତ ଡେଇଁ, ପାରି ହୋଇ କାରୁଣ୍ୟ ଓ ତୁମର ସଂହାର—"
ସେଦିନ ସନ୍ଧ୍ୟାରେ ଯେବେ ତା ଦେହର କ୍ଳାନ୍ତି ପାଇ ମୁଠାରେ ଲଗାମ୍
                    ତା'ର ଆସୁଥିଲା ହୁଗୁଳା ହୁଗୁଳା
ଠକ୍ ଠକ୍ ଘୋଡ଼ା ଟାପୁ ପଥର ଓ ଖାଲ ଡେଇଁ ସେଦିନ କ୍ଳାନ୍ତିରେ
                    ତା'ର ଯେତେବେଳେ ଅସହ୍ୟ ନିଷ୍ଠୁର
ତା' ଆତ୍ମାର ଅବସନ୍ନ ନିଶବ୍ଦ ବିଳାପ ପରି ସେଦିନ ଆକାଶ ତଳେ ସ୍ଥିର
                    ଯେବେ ହୋଇଗଲା

॥ ୭୯ ॥

ଅକସ୍ମାତ ଜଣଢ ପବନ
ସେତେବେଳେ ରଥ ତା'ର ସ୍ତ୍ରାର ହଠାତ୍ ମୋଡ଼ ବୁଲିଗଲା ପରେ
ସାମ୍ନାରେ ଯମୁନା ନଈ ସନ୍ଧ୍ୟାର ଆକାଶ ଧରି
ମାଲଢ ନଷ୍ଟାର ପାର୍କ, ଆଉ ଗୋପ ବଜାରର ଲୋକଭିଡ଼ ଦୋକାନ ଆଲୁଅ ।

"ମୋ ଯାତ୍ରାର କ୍ଲାନ୍ତି କ'ଣ ଶେଷ ଆଜି ଏଇଠାରେ !
ଯୁଗରୁ ଅନେକ ଯୁଗ ମୋ ପାଦର ଦରଜ ଓ ମୋ ଘୋଡ଼ା ଟାପୁର ଧୂଳି
ମୋ ଗାଡ଼ିର ଭଙ୍ଗାଚକ, ମୋ ଆଖିର କ୍ଲାନ୍ତ ଦୃଗ୍‌ବଳୟ
ମୋ ସତ୍ତ୍ୱର ଭ୍ରାନ୍ତି କ'ଣ ଶେଷ ଆଜି ଏଇଠାରେ
ମୋ ମାଂସର ଶ୍ଳୋକ ଶୋଷ ପାପ ପୁଣ୍ୟ
ମୋ ଆତ୍ମାର କାତରତା, ଭକ୍ତି ଆଉ ଅହଙ୍କାର, ଧର୍ମ ଆଉ ମୋକ୍ଷବାଦ
ଆଧ୍ୟାତ୍ମିକ ଚେଷ୍ଟାର ବଳୟ !
ମହାପ୍ରଭୁ ମୁକ୍ତି ଦିଅ—ଏହି ଯାତ୍ରା ଶୁଭ ହେଉ ତୁମର ଦୟାରୁ
ଏହି ଯାତ୍ରା ହେଉ ମୋର ଶେଷଯାତ୍ରା ଏ ଦେହରୁ
ତୁମର ସହାର ଡେଇଁ
ବହୁତ ବହୁତ କ୍ଲାନ୍ତ, ପୁନରୁକ୍ତ ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କରୁଣାର ସମୁଦ୍ର କୂଳରୁ ।"



# ବଣଭୋଜି

ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)



ଆମେ କେତେ ନରନାରୀ ଧନୀ ମଧ୍ୟବିତ୍ତ
ମାନନୀୟ ତଥା ସ୍ନେହାସ୍ପଦ
ଆପଣାର ସ୍ମିତ ଆଉ ଉଲ୍ଲାସକୁ ଭରଦେଇ ମଟର ବସ୍‌ରେ
ଆମେ ଦିନେ ଦୂରେ ଛୁଟିଗଲୁ
କେତୋଟି ମୁହୂର୍ତ୍ତପାଇଁ ଆମର ଯା' ପରିଚୟ
ତାହା ଭୁଲିଗଲୁ ।
ସେତେବେଳେ ଆମ୍ଭଗଛେ ବଉଳ ସମ୍ଭାର
ଦେହ ଓ ମନରେ ରଙ୍ଗ
ରଙ୍ଗ ପୁଣି ଅଧରେ ଅଧରେ ।
ବିକା କିଣା ଗହଳ ଚହଳ
ଗ୍ରାମ ଉପକଣ୍ଠେ···
ବାଣ ଫୁଲ୍ ମେଢ଼ ସଲିଟଣ
କଳଘୋଡ଼ା ନଉଡ଼ି ଖେଳରେ
କମ୍ବୁ ଧ୍ୱନି ମେଳଣ ପଡ଼ିଆ
ଝାଞ୍ଜ, ଖୋଳ ଖଞ୍ଜଣି ବାଦ୍ୟରେ ।

ଆଖିରେ ନାଚିଲା ବନ୍ଧୁ ଦିଗ୍‌ବଳୟ
ଝରକା ଭିତରୁ ଆମେ ସିନେମା ଦେଖିଲୁ ।
ଅଚିହ୍ନା ଜଗତ କେତେ ଅଚିହ୍ନା ମୁଖଶ୍ରୀ
ବାଟଚାଲି ଅଜଣା ପଥିକ
ବୁଢ଼ୀଡ଼ା ବଳଦ କାନ୍ଧୁ ଆମଲାଗି ଯୁଆଳି ଫିଟିଲା ।
ଆମେସବୁ ପରସ୍ପରେ ଭଲକରି ନିଜକୁ ଚିହ୍ନିଲୁ ।

ଆମେ ବାଛିନେଲୁ ଏକ ରନ୍ଧନର ସ୍ଥଳୀ
ସମ୍ପୂର୍ଣ୍ଣ ଅପରିଚିତ, ନୁହେଁ ଯା ଆମର
ଯାହାକୁ ଏଇଠି ରଖି ଆମେସବୁ ପୁଣି ଫେରିଯିବୁ

ତଥାପି ତାହାକୁ ଘେରି
ଆମେସବୁ ମନଇଚ୍ଛା ବହୁତ ଖେଳିଲୁ;
ତହିଁରୁ ମିଳିଲା ଯାହା ଆନନ୍ଦରେ ତାକୁ ଫୋପାଡ଼ିଦେଇ
ଆମେସବୁ ଏକଚେଟ ଭାଙ୍ଗିଲୁ ।
ପଲ୍ଲୀ ଏବଂ ସହରକୁ ଯୁକ୍ତ କଲୁ
ଯୁକ୍ତହେଲୁ ନିର୍ଜନ ପର୍ବତ ସାନୁ, ହ୍ରଦ ଆଉ ଦେବାଳୟ ସହ
କେତେଗୋଟି ମୁହୂର୍ତ୍ତକୁ ଘଣ୍ଟି ମାଜି
ଆନନ୍ଦରେ ଚକ୍ ଚକ୍ କଲୁ ।
ତା'ପରେ ଗୁଡ଼ବାଇ, ନମସ୍ତେ ନମସ୍ତେ
ମଝର ରହିଲା ଆସି
ପୁଣି ଆମେ ଫେରିଗଲୁ
ଯେ ଯାହାର ଖୋପ ଭିତରକୁ
ସେଇ ଆମ ବନ୍ଧିବାର ଶଗଡ଼ ଗୁଳାକୁ ।



# ପୁନଶ୍ଚ ପୁରୁଷୋତ୍ତମ : ପୁନଶ୍ଚ ସମୁଦ୍ର

ଡ. ଗୋପାଳଚନ୍ଦ୍ର ମିଶ୍ର



ଆତ୍ମା ମୋର ଅବିଭକ୍ତ, ଅବିଚ୍ଛିନ୍ନ ଦିଗନ୍ତର ନଈଧାର
ବହୁପତ୍ର ବହୁ ରଙ୍ଗ ମଞ୍ଜରୀର ଏକମାତ୍ର ସହକାର,
କେଉଁ ଏକ ନୀଳହ୍ରଦ ବକ୍ଷୋପରି ବିହଙ୍ଗମ ଶ୍ରେଣୀ
ସମସ୍ତଙ୍କ ଡେଣା ପରେ ଯେଉଁପରି ସ୍ଥିତିର ସୂଚନା ।
ଶରୀରର ବାଇଶି ପାହାଚ ଅନ୍ତର୍ଯାମୀ ଜଗନ୍ନାଥ-ଆତ୍ମା ମୋର
ପୁନଶ୍ଚ ପୁରୁଷୋତ୍ତମ ପୁନର୍ବାର ଆତ୍ମା ସାଥେ ମିଳିତ ହେବାର
ଗଙ୍ଗା ସ୍ରୋତ ଏକ ସ୍ଥାନେ ସ୍ଥିତିବାନ ହୋଇ ଦିଗନ୍ତରେ,
ଗୋଦାବରୀ ବାଲୁକାରେ ନିଜକୁ ପ୍ରକାଶ କରେ ଯେହ୍ନେ
ଦେହର ପ୍ରାଚୀର ତଳେ କକ୍ଷ-ବନ୍ଦୀ ଅବିଭକ୍ତ ଆତ୍ମା ମୋର
ଆଜି ପୁଣି ଏହି କ୍ଷେତ୍ରେ ସମ୍ମୁଖୀନ ହେଲା ନିଜ ଦେବତାର ।

ମୋର ଯେତେ କୋଳାହଳ ମୋ ଦେହର ଯେତେ କ୍ଲାନ୍ତ ପ୍ରଗଳ୍ଭତା
ସୂର୍ଯ୍ୟର ଜ୍ୱାଳାରେ ଚନ୍ଦ୍ରଶୂନ୍ୟ ଅମାବାସ୍ୟା ତୁଷାର-ଅସ୍ତିତ୍ୱ
ସମସ୍ତର କୋଟି ହାତ ଲମ୍ବ ବେଣୀ ସ୍ୱପ୍ନଭଜା ସୂର୍ଯ୍ୟାସ୍ତ ଭିତରେ
ପିଟିହୋଇ ଏଠି ଆସି ହେଲା ପ୍ରସାରିତ ଜୀବରୂପୀ ହଂସ
ସମସ୍ତ ଇନ୍ଦ୍ରିୟ ସାଥେ ଜୀବରୂପୀ ଜ୍ଞାନ ମୋର ହେଲା ଏକାକାର
ଆଉ ଏକ ମହାଶକ୍ତି ସାନ୍ନିଧ୍ୟର ସତ୍ତା ପରେ ଅସ୍ତିତ୍ୱ ଜର୍ଜର
ଅମାନିଆ ଶିଶୁ ଯେହ୍ନେ କଣ୍ଢେଇ ଭିତରେ କରେ ଆବିଷ୍କାର
ସ୍ପର୍ଶସ୍ନାନ ରୂପସ୍ନାନ ରଙ୍ଗସ୍ନାନ ଚିଦାନନ୍ଦ ମୋକ୍ଷ ।

ତାଙ୍କୁ ମୁହିଁ କେବେ କେଉଁଠାରେ କେବେହେଲେ ଦେଖିନାହିଁ
କଳ୍ପନା ଚିନ୍ତାରେ କେବେ ମୁହୂର୍ତ୍ତିକପାଇଁ ଆଙ୍କିପାରି ନାହିଁ,
ତେଣୁ ଆଜି ଯେତେବେଳେ ଶ୍ରୀକ୍ଷେତ୍ରରେ ପାଏ ତାଙ୍କର ଦର୍ଶନ
ସେତେବେଳେ ମୋ ନିକଟେ ସେହି ଏକ ଅବିନାଶୀ ସତ୍ୟ
ଅଥଚ ମୁଁ ବହୁବାର ବହୁ ସ୍ଥାନେ ଦେଖିଛି ସମୁଦ୍ର;
କିନ୍ତୁ ଆଜି ଯେତେବେଳେ ଦେଖେ ତାକୁ ଏହି ଝାଉଁବଣ ଧାରେ

|| ୭୫ ||

ସେତେବେଳେ ତାକୁ ମୁହିଁ ମନେକରେ ଏକ ବିଦ୍ରୋହୀ କବିତା
ଏ ସମୁଦ୍ର ମୋ ଆଗରେ ପିଲାଦିନ ଖେଳନା କଣ୍ଢେଇ
ଏ ସମୁଦ୍ର ଯୌବନରେ ମୋ ନିକଟେ ଆବେଗର ବହ୍ନି
ଏ ସମୁଦ୍ର ବାର୍ଦ୍ଧକ୍ୟରେ ମୋ ଦୃଷ୍ଟିରେ ସାନ୍ତ୍ୱନାର ବିନ୍ଦୁ
ଏ ସମୁଦ୍ର ଶ୍ରୀକ୍ଷେତ୍ରରେ ମୋ ମତରେ ବିଶ୍ୱାସର ମୈତ୍ରୀ
ବିଦ୍ରୋହର ଦୀପ ଜାଳି ମତେ ଅବା ଦେଖାଉଛି ଅଗ୍ନିଶିଖା
ଶ୍ରୀକ୍ଷେତ୍ରର ନୀଳଚକ୍ର ପବନରେ ଖୋଲୁଅଛି ଝାଉଁର ଝଙ୍କାର
ସବୁ କିଛି ମାୟାଜାଲ ଛିନ୍ନକରି ଏଠି ଏହି ବାଲୁକା ଶଯ୍ୟାରେ
ସବୁଦିନେ ଖୋଳୁଥାନ୍ତି ଜୀବନକୁ ଭୁଲିଯିବା ଭଳି
ଶାମୁକା ପୋହଳା ।

ଏ ପୃଥିବୀ ଏ ସଭ୍ୟତା ଆଜି ଯନ୍ତ୍ରଣାର ଦୋଛକି ଉପରେ
ଚନ୍ଦ୍ର ଦେହେ ହାତ ରଖି ବ୍ୟକ୍ତି ଆଜି ଧାନକରେ ବିଜ୍ଞାନର ବିଷ
ନିଜକୁ ଚହ୍ଲିବାପାଇଁ ସବୁ କିଛି କୁଠାରେ ତା'ର ଜ୍ଞାନ
ସର୍ବସ୍ୱ ଗୁଣ୍ଡିଦିଏ ସିନା ପାଲଟିବ ବାହୁଡ଼ା ବିଜୟ, କିନ୍ତୁ
ମଣିଷ ଯେ ମଣିଷକୁ ଧ୍ୱଂସ କରେ
ବିଦ୍ୱେଷ ବ୍ୟୂହରେ ।

ପୃଥିବୀର ଅପ୍ରମିତ କରୁଣାର ନାହିଁ କିବା ବାହୁଡ଼ା ବିଜୟ ?
ପୁନଶ୍ଚ ପୁରୁଷୋତ୍ତମ ଆଉ ପୁନଶ୍ଚ ସମୁଦ୍ର ଶୀର୍ଷକର
ଏହି ଆଜି ଶେଷ ପ୍ରଶ୍ନ ଶିଶୁ ଭଳି ନାଚୁଥିବା ଢେଉମାନଙ୍କର ।



# କାଠଘୋଡ଼ା ପାଣି ପି'

ବେଣୁଧର ରାଉତ

●

—ଏକ—

କାଠଘୋଡ଼ା ପାଣି ପି'ରେ ପାଣି ପି',
ରଜାଘର ପୋଖରୀ ଏ ଜାଣି ପି' ।
ପଦ୍ମରୁ ହୁଏ ଏଠି ବରଷଣ ମଧୁର,
ପଦ୍ମରେ ସୁରଭିତ ଏଇ ଘର, ସୁଶୀତଳ ମଧୁର,—
ଜାଣ୍, ପି'ରେ ଜାଣି ପି' ।

ନୂଆ କାଳ ହସି କହେ,—'ଏ ମାଟିର ଜନଗଣ ଶୁଣ ହେ,
ମୁକ୍ତିର ସୁଧା-ବୀଜ ଦେହେ ଦେହେ ଆତ୍ମାରେ ବୁଣେ ହେ ।
'ସୁନାର ଫସଲ ଦେବେ' ଦୀନ ଭବ ବସୋର,
ଦେଖ ଅ.ଜି ଅମୃତ-ଆଲୋକରେ ମାଟି ଡୋର ବଭୋର ।'
ରଜକର ସୁରେ ସୁରେ ଶୁଣାଯାଏ ଅନ୍ତର ବଚନ—
'କାଠଘୋଡ଼ା ଜନଗଣ । କାଠଘୋଡ଼ା ବୁଝେ କବା ଜୀବନ !
ସୁନାର ଫସଲ ଦେବେ ଦୈନ୍ୟରେ ଶୋଷିତ ଯା' ରକତ,
ମୁକ୍ତି କ ମହନୀୟ ବୁଝିବ ସେ ?—ହବ ତା'ର ଭକତ ?
ହୁଏ ତ ବା ନଜିବ ସୁନାର ସେ ପାଉଥିବ ସ୍ୱାର୍ଥିକ ପରଶ,
ଅଭାବର ହସ-କାନ୍ଦ, ରସ କାହିଁ, କାହିଁ କହ ହରଷ ?
ହେ ମୋର ବାଳୁତ ଭାଇ ନୂଆକାଳ, ବାଇ ହୁଅ କାହିଁକି ?
କାଠଘୋଡ଼ା ପାଣି ପିଏ, ଜାଣେ କାହିଁ, କେହୁ କ ?'

—ଦୁଇ—

କାଠଘୋଡ଼ା ପାଣି ପି'ରେ ପାଣି ପି',
ରଜାଘର ପୋଖରୀ ଏ ଜାଣି ପି' ।

ଚନ୍ଦ୍ରରେ ବଳସିଛି ଏକ ମରୁ କନ୍ଦାରେ,
ଚନ୍ଦ୍ରର ମୃଗ ଆସି ପିଏ ଏଥି ତୃଷାରେ—
ଜାଣ୍, ପି'ରେ ଜାଣି ପି' ।
କାଠଘୋଡ଼ା ପାଣି ପି' ।

ନୂଆ କାଳ ଧୀରେ କହେ,—କଥାଟିଏ କହିବ,
ଛିନ୍ନ କାନ୍ଧିକ କହ ଏ ମାଟିର ନିର୍ଯ୍ୟାସ ବହିବ ?
କଳ୍ପନା ଢଗ ଘେନ ଅତୀତରେ ଶୁଦ୍ଧି ଦୂରେ ସୁଦୂରେ
ଗଉରବ ମୂର୍ତ୍ତିର ଅଙ୍କନ ଏଇ ମାଟି ତନୁରେ ।
ରଜକର ସୁରେ ସୁରେ ମୁହିଁଉଠେ ମର୍ମର ବଚନ—
'ଅତୀତର ଇତି ହଉ । ଲୋଡ଼ା ଆଜ ଜୀବନ,
ଅତୀତର ଇତିହାସ, ସଂସ୍କୃତି, ଗୌରବ ସୁମଣ
କାଠଘୋଡ଼ା-ଜନଗଣେ କିବା ଲଭ, ଶୂନ୍ୟରେ ପଦ୍ମିଣ ?
ହେ ମୋର ବାଲୁଙ୍କ ଭାଇ-ନୂଆ କାଳ, ବାଇ ହୁଅ କାନ୍ଧିକ,—
କାଠଘୋଡ଼ା ପାଣି ପିଏ, ଜାଣେ କାନ୍ଧି, କେହି କି ?'

—ତିନି—

କାଠଘୋଡ଼ା ପାଣି ପି'ରେ ପାଣି ପି',
ରଜାଘର ପୋଖରୀ ଏ ଜାଣି ପି' ।
ସକାଳ ଓ ସଞ୍ଜର ପରଶରେ ସ୍ୱର୍ଣ୍ଣି,
ଖେଳଯାଏ ଡୋଳି ଏଠି ସପନର ବର୍ଣ୍ଣି—
ଜାଣ୍, ପି'ରେ ଜାଣି ପି' ।
କାଠଘୋଡ଼ା ପାଣି ପି' ।

ନୂଆ କାଳ ପୁଣି କହେ,—'ଜନଗଣ, ଶୁଣ ମୋ ଭାରତୀ,
ବିଜ୍ଞାନ ଯଗଡରେ ସାତସାନ ଆଜ ପୀନ ଧରତୀ ।
ଜାଗ, ଜାଗ, ଏ ମାଟିକି କର ଆଜି ସୁନାର,
ବିଶ୍ୱରେ ତୋଳ ଆରେ ଐକ୍ୟର, ଶାନ୍ତିର ଅଦ୍ଭୁତ ମୀନାର ।
ଅତୀତରେ ଭୁଲି ତେବେ ସମ୍ମୁଖେ ଚାଲ ରେ
ବିଶ୍ୱରେ ଝଲସାଅ ଅପରୂପ କୀର୍ତ୍ତିର କାଳରେ ।'

ରଜକର ହସେ ଝଡ଼େଁ ସନାତନ ତନ୍ତ୍ର—
'ପାପୋଶର' ଅନ୍ନ ଯେ ଜନଗଣ ପସ୍ରଣରେ ପଙ୍କ !
ନର୍ତ୍ତିବ କାଠଘୋଡ଼ା, କାନ୍ଧି ତୋ'ର ଜୀବନ,—
ଇନ୍ଦ୍ରପ୍ରସ୍ଥ, ଶକ୍ର ବା ; – କଣବ ସେ କୀର୍ତ୍ତିର ସୃଜନ !
ସଭ୍ୟ ଏ ଦେଶେ ଦେଶେ ନାହିଁ ଯଦ ବଶ୍ୱାସ ପୀରତ,
ବୁଦ୍ଧିର ଯୁଦ୍ଧରେ ଅବରତ ଶଙ୍କିତା ଧରତ୍ରୀ,
ନଷ୍ପ୍ରାଣ କାଠଘୋଡ଼ା---ଜନଗଣେ ତୁମେ ହାସ୍ୟ ଭୁଲେଇ
ବୁଦ୍ଧି ଓ ସ୍ୱାର୍ଥରେ ଅଜି ତା'ର ଶ୍ରମ ନବ ମୂଲେଇ ?
ଅଶ୍ୱବୀର ହସ କାହିଁ, ରସ କାହିଁ, କାହିଁ ଜହ୍ନ ହରଷ,
ଧୃମପାଇଁ ତୋଳିବ ସେ ଇତିହାସ ଦେଶ ନାମେ,
କୀଟ ସମ, କୋଟି କୋଟି ବରଷ ?
ହେ ମୋର ବାଳୁତ ଭଇ ନୂଆ କାଳ, ବାଇ ହୁଅ କାହିଁକି ?
କାଠଘୋଡ଼ା ପାଣି ପିଏ, ଜାଣେ କାହିଁ, କେହି କି ?



# ପିଙ୍ଗଳାର ସୂର୍ଯ୍ୟ

ବେଣୁଧର ରାଉତ



ଆତ୍ମାକୁ ଦଅନ୍ତୁ ସେ ହରି ।
ତା' ତହୁଁ ଆନ ଇଚ୍ଛା କରି ॥
ମୋ ପ୍ରାଣନାଥ ଅଛୁ ପାଖେ ।
ମୁହିଁ ନ ଦେଖଇ ପ୍ରତ୍ୟକ୍ଷେ ॥

—ଜଗନ୍ନାଥ ଦାସ

ଏ ନୀଳ ନିଶୀଥ ଯେଉଁଠି ପ୍ରଜ୍ୱଳିତ ଅସଂଖ୍ୟ ତାରାରେ,
ଏ ନୀଳ ନିଶୀଥ ଯେଉଁଠି ନିପୀଡ଼ିତ ଲେଲିହାନ କାମନା ଜ୍ୱାଳାରେ,
ଏ ନୀଳ ନିଶୀଥ ଯେଉଁଠି କାନ୍ଦୁଅଛୁ ବିନ୍ଦୁ ବିନ୍ଦୁ ଅଜସ୍ର ଶିଶିରେ,
ଏ ନୀଳ ନିଶୀଥ ଯେଉଁଠି ଭଗ୍ନ ପତ୍ରେ ପ୍ରତୀକ୍ଷାର ବିଶ୍ଳଥ କ୍ଳାନ୍ତିରେ,
ଏ ନୀଳ ନିଶୀଥ ଯେଉଁଠି ମିଶାଉଛି ବିଦେହକୁ ମହାଶୂନ୍ୟତାରେ
ଏବଂ ମହାଶୂନ୍ୟତାରେ ମିଶାଉଛି ଶୋଣିତକଣ୍ଠ-ଉଦ୍ଦୀପ୍ତ-ରାଗିଣୀ,
ପିଙ୍ଗଳାର ସଂଶୋଭିତ ଇତସ୍ତତ କାମାତୁର ଯେତେ ଦୃଷ୍ଟି ବାର୍ତ୍ତା,
ବାସକସଜ୍ଜାର ଯେତେ ଉପସ୍କର, ଯେତେ ଜ୍ୱାଳା, ଶୂନ୍ୟ ଘଣ୍ଟାପଥ
ନିର୍ଜିତ ଧୂସର ଦିଗମାଳମାରେ ଶମେ ଯେଉଁଠି ଆପଣାକୁ କରୁଛି ବିଲୀନ
ଧ୍ୟାନସ୍ଥ ଚ୍ୟବନ ପରି, ଅସହ୍ୟ ଏ ଶୂନ୍ୟତା ଓ ନୀରବତା ଭରି —
ମାଂସର ବିଳାପ ମାତ୍ର ଅନୁଯୋଗେ ଶୁଭୁଅଛି, ପିଙ୍ଗଳାର ପ୍ରିୟ କାହିଁ, କାହିଁ ?
ଶୋଣିତେ ଅଗ୍ନିର ଢେଉ ନାଚୁଅଛି ଝଡ଼ପରି ଅନ୍ଧକାରେ ତାଡ ଓ ତଡେଇ,
ଏ ରାତର ଆକାଶରେ ଏତେ ତାରା ! ଏତେ ରାତ ! ଏତେ ନିର୍ଜନତା !
ପିଙ୍ଗଳାରେ ଏତେ ଦେହ ! ଏତେ ଜ୍ୱାଳା ! ଏତେ ଆତୁରତା !
ଆକାଶ ବି କେତେ ଶୂନ୍ୟ ! କେତେ କଳା ! କେତେ ମୂର୍ତ୍ତିମନ୍ତ !
ପିଙ୍ଗଳା କ୍ଷୁଭିତ କେତେ ! କ୍ଳାନ୍ତ କେତେ ! କେତେ ମ୍ଳାନ, ଅଶ୍ରୁରେ ମଥିତ !

॥ ୭୦ ॥

ନୀଳ ନିଶୀଥର ତାରା, କାମନା ଓ ଆକାଙ୍କ୍ଷା ଓ ବିଦେହ ଶୂନ୍ୟତା
ପିଙ୍ଗଳା ଦେହର ସୀମା ଅତିକ୍ରମୀ, ହୃଦୟ ଓ ମନକୁ ଆବେଶି
ଗୋଣ୍ଡକଣ୍ଠ ଉଦ୍ଦୀପିତ ରାଗିଣୀକୁ ଘୋଟେ ଘୋଟେ କାଳିମାରେ କରୁଛି କରୁଣ;
ନୀଳ ନିଶୀଥର ତାରା, କାମନା ଓ ଆକାଙ୍କ୍ଷା ଓ ଖିଳ ବହ୍ନିରଙ୍ଗ
ପିଙ୍ଗଳାର ଅନ୍ତରଙ୍ଗେ ଝଙ୍କମୁଛି, ତା' ଆତ୍ମାକୁ ଏ ଶାବଲ୍ୟେ କରୁଛି ପୀଡ଼ିତ;
ପିଙ୍ଗଳା ଦୃଷ୍ଟିର ବର୍ଣ୍ଣା ଘଣ୍ଟା ପଥ—ବହ୍ନିରଙ୍ଗ ସ୍ୱତ ଅପସର
ଖୋଜୁଛି ତା' ଅନ୍ତରଙ୍ଗେ ସ୍ରୋତ ହୋଇ ଯେହ୍ନେ ଅବା କେଉଁ କୂଳପଥ,
—ଯେମିତି କି ବହିଯିବ ସମୁଦ୍ରକୁ ନଜେ ଅଜ, (କିଏ ସେ ସମୁଦ୍ର ?)
ଏ ତ ନୁହେଁ ପିଙ୍ଗଳାର ପ୍ରିୟଜନ; ଏ ସମୁଦ୍ର—ଅନନ୍ତ ଘୋଷରେ
ସେ ଏକ ବିନ୍ଦୁର ମାତ୍ର ଅଣୁସ୍ୱର; କିଏ ସେ ସମୁଦ୍ର !
ଅଶାର ମାଧୁର୍ଯ୍ୟ ବନ୍ଧେ କରୁଛି ଏ ପିଙ୍ଗଳାର ସମଗ୍ରେ ଭସାଇ
ବ୍ୟାକୁଳ, ବିହ୍ୱଳ, ମୂଢ଼ କେଉଁନାଦେ, କେଉଁ ମଦେ; କିଏ ସେ ସମୁଦ୍ର !
ପିଙ୍ଗଳା ଦେଖୁଛି ଅବା କିଛି କିଛି ପରିଚୟ ସମୁଦ୍ରର ଅପରିଚୟରୁ ,
ଏ ଦେହେ ପରମ କିଛି, ଇନ୍ଦ୍ରିୟର ଉତ୍ତୀର୍ଣ୍ଣତା, ସତ୍ତ୍ୱ କିଛି; କ୍ରମଶ ସ୍ଖଳିତ
—କୁଣ୍ଡଳିନୀ ପିଙ୍ଗଳାର ହେଉଅଛି କିଛି କିଛି ମୁହ୍ୟମାନ କୌଣସି ନିର୍ମୋକ
ଏବଂ ସେ ହଠାତ୍ ଯେହ୍ନେ ବାତାୟନେ ନ୍ୟସ୍ତ ଏବଂ ନୀରବିତ ବିପଞ୍ଚୀ ଭିତରୁ
ଶୁଣୁଛି ସ୍ୱୟଂଭୂ ସ୍ୱର ଅନାହତ ସୁଦୂରର,—ଆତ୍ମା ଯେହ୍ନେ ଗାଉଛି ଜାଗୃତ—
(ଏ ଯେମିତି ପୀଢ଼ଶାଳା-'ବିଗ୍ରଂଭଣେ' ସୁଷିତ ଓ ପର୍ଯ୍ୟାକୁଳ ସିଦ୍ଧାର୍ଥର କାନେ
ବାଲ୍ଲକାର ସ୍ୱୟଂଜାତ ସ୍ୱରେ ସ୍ୱରେ ଦେବତାର ଗାଉଥିବ ଗୀତ—
ଉଠ ହେ ମାୟାର ପୁତ୍ର, ବେଳ ହେଲା, ଅହେ ଉଠ ଅମୃତର ଦୂତ !)
ଆତ୍ମା ଅବା ନିବୋଧୁଛି, ଉଦ୍ଧରୁଛି ପିଙ୍ଗଳାକୁ ପରମ ଓ ପ୍ରେମର ସଙ୍ଗୀତେ,
ପିଙ୍ଗଳା ଚହ୍ନୁଛି ଅବା ଆପଣାକୁ, ପ୍ରେମକୁ ଓ ପରମକୁ ସ୍ୱଚ୍ଛ ଅଭିଜ୍ଞାରେ ।

ପିଙ୍ଗଳା ପାରୁଛି ଚହ୍ନି ଆପଣାକୁ, ପରମକୁ, ପ୍ରେମକୁ କ୍ରମଶ,
ଚକିତେ ହୃତ୍‌ବେଦର ସ୍ୱପ୍ନର ଓ ପ୍ରଜ୍ୱଳନ୍ତ ତା' ଆତ୍ମାର ଦ୍ୱିତ୍ୟାତ୍ମା ଭିତରେ
ଚହ୍ନୁଛି ସେ ପରମର ବିନର୍ତ୍ତିତ ରମ୍ୟସତ୍ତା;
                    ତେଣୁ ଅବା ପୁଲକିତ ସାତ୍ତ୍ୱିକ ବିକାରେ
ସେଇ ଅନ୍ତ ସଙ୍ଗୀତର ଦ୍ରୁତସ୍ୱରେ ଉଚ୍ଛ୍ୱସିତେ ଗାଉଛି କ୍ରନ୍ଦନ
ପରିତପ୍ତ ଝଂକୃତ ଓ ବେପଥୁରେ ଭରା ଏଇ ଉତ୍ତର ନିଶୀଥ—

(କା' ଲାଗି ଗାଇଲି ହାୟ ବିମୂଢ଼ ମୁଁ କାମନ୍ତାକ ଉଦ୍ଦୀପକ ଏରେ ଗୋଣ୍ଡକସ୍ତ !)
ଗାଇଚି ସେ ଅଶ୍ରୁଗଙ୍ଗା ଧୋଇ ଆତ୍ମ-କାଳିମାର ଯେତେକ ଆକାଶ,
ଭସାଇ ଯେତେକ ତାସ ଏ ଦେହର ଏ ମନର, ଚନ୍ଦ୍ରିକା ଓ ଚନ୍ଦ୍ର କାମନାର—
(କନ୍ଦାଇଲି କେତେ ହାୟ ମୋ କୁଣ୍ଠିତା ବିପଞ୍ଚୀକ ମାଝ କେଉଁ
ଦେହ ବନ୍ଦନାରେ !)
ଗାଉଚି ସେ ସ୍ୱରଭଙ୍ଗ, ସ୍ୱର୍ଗ ଦେଇ ଏତେ ଦେହ, ଏତେ ସତ୍ତ୍ୱ, ଏତେ ନିର୍ଜନତା—
(ମୁଁ କେତେ ଅଶାନ୍ତ ହାୟ ଭ୍ରମୁଥିଲି ମୃଗୀ ପରି ନିଜ ନାଭି କସ୍ତୁରୀ ବିଭ୍ରମେ,
ତରଙ୍ଗର ଫେନଚୂଳେ ମୁଗ୍ଧ ହୋଇ ପାଶୋରିଲି ମୋ ନିଜର ଅନନ୍ତ ସମୁଦ୍ର !)
ଶାନ୍ତ ସେ ଗାଉଚି ଭୁଲି ଯେତେ ଜ୍ୱାଳା, ଯେତେ ଗ୍ଲାନି, ଯେତେ ଆତୁରତା—
(ହେ ମୋର ଆତ୍ମସ୍ଥ ପ୍ରିୟ, ହେ ପରମ, ହେ ଅନାଦି ପ୍ରୀତିକ୍ଷର ମୋର,
ହେ ଛଅ-ଐଶ୍ୱର୍ଯ୍ୟ ମୋର, ତୁମେ ଥାଉଁ ଭ୍ରମିହେଲି କି ଅଜ୍ଞାନେ ତମିର ଲୀଳାରେ ?
ତୁମେ ମୋର ମୂର୍ତ୍ତିବନ୍ତ, ଯେଉଁଠି ମୋର ଆତ୍ମଶୂନ୍ୟ, କାଳଶୂନ୍ୟ, ଦେଶଶୂନ୍ୟ ସବୁ
ପୂର୍ଣ୍ଣ କର ଚିରନ୍ତନ ପ୍ରଣୟର ଆତ୍ମାନନ୍ଦୀ ଭୂସ୍ୱପ୍ନ ଆହ୍ଲାଦେ……)

ପିଙ୍ଗଳା ଗାଉଚି ଜେହ୍ନେ ନୀରବତା ମୁହ୍ୟମାନ ମୂର୍ଚ୍ଛିତ ପୀଡ଼ାରେ
ଆଶ୍ଳେଷ ମୁଦ୍ରାରେ ତୋଳି ଦୁଇହାତ,
ଏବଂ ହୃଦକାନ୍ଦର ଶାବକେ
ଦେଖୁଚି ମାଧ୍ୱୀକା ଯେତେ ସତ୍ତ୍ୱ ଏବଂ ଯେତେ ସତ୍ତ୍ୱ ଅରଣ୍ୟ-ଓ-ଇନ୍ଦ୍ରିୟଜନିତ
ବେପଥୁରେ ଥର ଥର ସୋହାଗ ଓ ବିନର୍ତ୍ତିତ ଦ୍ୟୁତିରେ ସ୍ପନ୍ଦିତ;
ପିଙ୍ଗଳା ଦେଖୁଚି ଆତ୍ମ ଅଭିଜ୍ଞାରେ ତା' ପିଣ୍ଡରେ ଜାଗରିତ କୁଣ୍ଡଳିନୀପରି
ପିଙ୍ଗଳା ନାଡ଼ୀରେ ସ୍ୱୟଂ-ଉଚ୍ଛ୍ୱସିତ ସଂପ୍ରଚ୍ଛନ୍ନ-ସୂର୍ଯ୍ୟର ବିଶ୍ୱାସ;
ସେ ବିଶ୍ୱାସେ ଭେଟୁଚି ତା' ସମୁଦ୍ରକୁ, ପରମକୁ, ନାଗରକୁ ତା' ଆରି ସୂର୍ଯ୍ୟକୁ
ଆଶ୍ଳେଷ ମୁଦ୍ରାରେ ତୋଳି ତଦବସ୍ଥ ଦୁଇହାତ ମୁହ୍ୟମାନ ମୂର୍ଚ୍ଛିତ ଆଲୋକେ ।



# କୋଣାର୍କ

ଅନୁଜା ରାଓ



ଆମେ ସବୁ ସହରର ଲୋକ
ବାହାରିଛୁ ଦେଖିବାକୁ କୋଣାର୍କ ।
ହଠାତ୍ ମଟର ଧଳ ଲାଲ ଧୂଳି
ଉଡ଼ାଇ ଉଡ଼ାଇ,
ମୁହଁରେ ଚୁରୁଟ୍—କାନ୍ଧରେ ଝୁଲାଇ 'ରୋଲି',
ଆମେ ସବୁ ପାଖାପାଖି
ଜକାଜକ, ପଞ୍ଜାବୀ ଓ ଗ୍ଲେଲି ।

ଆମେ ସବୁ ଭଦ୍ରଲୋକ—
ଟକ୍ ଟକ୍ ସୁନାର ବୋତାମ,
ତାମ୍ ଆଉ ଗ୍ରାମଫୋନ୍, ବୋତଲରେ
'ରମ୍' ।

ସହର ସୀମାରୁ ଦୂର ନିଛାଟିଆ
ଏକୁଟିଆ ଗ୍ରାମ,
ଜାଣେ ନାହିଁ କ'ଣ ତାର ନାମ ।
ସେଇଠି ରହିଲୁ ଆମେ
ପଇଡ଼ର ତୃଷ୍ଣା ଲାଗେ ଖର,
କିଏ ଏ କଣୋଣ ?
ଶାନ୍ତ ତା'ର ଦୁଇ ଆଖି
ଗାଈ ଆଖି ପରି !
ଚୁପ୍‌ଚାପ୍ ବସିଛୁ ମୁଁ,
ମଗ୍ନ ମୋର ଚେତା
ସଙ୍ଗିନୀ ଦେଖାଇ ଦେଲେ,
ବାଉଁଶ ବୃନ୍ଦା ଅଗରେ କାପଡ଼ା—

|| ୭୩ ||

କେଉଁଠି ବା ଧାନର ଅରଣ୍ୟ
ଝାଉଁ ଆଉ ବାଦାମର ବଣ,
କାହାର ପିଢ଼ାରେ ଲାଉ,
ଏସବୁ ଦେଖିଲୁ ଆମେ
ଦିନ ଥାଉ ଥାଉ ।

ତା'ପରେ ଆସିଲା ରାତି—
ପୋଲଙ୍ଗ ଗଛର ପତ୍ର ଚିକ୍‌ମିକ୍,
ଜହ୍ନ ଆସେ ଉଇଁ,
ବିସ୍ତୀର୍ଣ୍ଣ ଘାସର ଚଟେଇ,
ଯାଦୁକର ମେଘ ଆଣେ
କେଡ଼େ ସାନ କେଡ଼େ ବଡ଼ ମୂର୍ତ୍ତି ।

ଏସବୁ ଦେଖିଲୁ ଆମେ
ଧୂଳି ଆଉ ଚୁରୁଟ ଧୂଆଁରେ,
ତୁମେ କେବେ କୋଣାର୍କ ଦେଖିଛ ?
ନାଲି-ଓଠ ଝିଅଟି ପଚାରେ—
ଅଳସ କନ୍ୟାର ମୂର୍ତ୍ତି ସତେ କ'ଣ
ପଥରରେ ଗଢ଼ା ?

ଦାନ୍ତ ଚିପି ହସିଲା ସେ,
ତା' ହସର ଦାମ୍ ଭାରି ଚଢ଼ା ।
ତା'ପରେ ଅନେକ ଝାଉଁ
ଡେଇଁ ଡେଇଁ ବାଲିର ଚକଡ଼ା,
ଚିପିଚାପି ଗୋପ ଜମାପଡ଼ା,
ଭାବୁଛୁ କେଡ଼ିକ ବଡ଼ କୋଣାର୍କର
ହାତୀ ଆଉ ଘୋଡ଼ା !

ଏଇଠି ରହିଲା ଗାଡ଼ି,
ବାଲି ଭାଙ୍ଗି, ଠେଲି ଠେଲି ପାଦ,
ପହଞ୍ଚିଲୁ ଆମେସବୁ,
ଦୂରୁ ଶୁଭେ ସମୁଦ୍ରର ନାଦ ।

॥ ୭୪ ॥

କୁକୁଡ଼ାର ହାଡ଼ ନେଇ କୁକୁରଟା
ଚୋବାଉଛି ଖାଲି.
ଅଣ୍ଡାର ଖୋଳପା ଆଉ ମାଛକଣ୍ଟା,
ଚାରିପଟେ ବାଲି ।
ଏଠି ଅଛି ଡାକ-ବଙ୍ଗଳା,
ଟଣା-ପଙ୍ଖା; ଆରାମ ଚଉକି,
ନିଶ୍ଚିନ୍ତ ନିଦର ମଜା,
ଏ କିଛି ନୁହେଁ ତ ସଉକ !

ଶୋଇ ଶୋଇ ଭାବୁଛି ମୁଁ,
ଭୁଲିଯିବି ଆଗ ଆଉ ପଛ,
ପଚାରିଲା ଅଳ୍ପ ହସି, ଆଖି ଟେକି
ଭ୍ରୂଲତା ନଚାଇ,
ସେ ଝିଅଟି ମୋତେ ପୁଣି,
ତୁମେ କ'ଣ କୋଣାର୍କ ଦେଖିଛ ?



# ସତ୍ତା ଓ ସମୁଦ୍ର

ଜାନକୀ ରାଓ



ଅନେକ ମୁହୂର୍ତ୍ତ ଗୁଚ୍ଛି, ମୃତ୍ୟୁର ସୁରଭି
ନେଇ ଯେବେ
ପୃଥିବୀର ସବୁ ବାଟ ଗୁଲ୍ମ ଗୁଲ୍ମ
ପହଞ୍ଚୁଛି ଏବେ

କେଉଁ ଏ ଅଜଣା ଦେଶେ—
ବିଚିତ୍ର ଆକାଶେ
ଚପଳ ନକ୍ଷତ୍ର ଯହିଁ ଲେଟି ଲେଟି
ହସେ ।

ତୁମେ ଯଦି ଆସ ଆଜି
ଯୋଜନ-ଯାଡ଼ି ରାତିର କୁହୁଡ଼ି
ଖୋଲି ଆଜି ରାତିପାଇଁ
ଦୁହେଁ ଯିବା କୁହୁଡ଼ିରେ ବୁଡ଼ି
ଆଜିପାଇଁ ଯିବା ବାଟ ହୁଡ଼ି ।

ତଳର ତଳାର ନାହିଁ ସମୁଦ୍ରର
ମାଛରଙ୍କା ଦେହ
ଦୁହେଁ ଯିବା ଲୀନ ହୋଇ—
ଏ ରାତିକୁ କରନା ସନ୍ଦେହ !

ଛିନ୍ନଭିନ୍ନ ଚେତନାରେ ଫେରିଆସୁ
ସମୁଦ୍ରର ଢେଉ
ସମୁଦ୍ର ସାରସ ଆଜି ଉଡ଼ିଯିବ
ବେଳ ଥାଉଁ ଥାଉଁ,

କେବଳ ଗୋଟିଏ ମାତ୍ର, ସନ୍ତାନର
ପ୍ରଥଶ୍ରୁ ଢ ବେଦନ
ମୋ ସତ୍ତାକୁ ଛୁଇଁବାକୁ
ଆଶ୍ଚର୍ଯ୍ୟ ଜୁଆର ଆସେ
ଅନ୍ଧାରରେ ବାଟ ଚହ୍ଲି ଚହ୍ଲି ।



# ଶୟତାନପାଇଁ ଗୋଟିଏ ସ୍ତୁତି

ଚିନ୍ତାମଣି ବେହେରା



ମୋର ଅସ୍ଥି-ପିଞ୍ଜରକୁ ହାତୁଡ଼ିର ନିର୍ମମ ପ୍ରହାରରେ ଚୂର୍ଣ୍ଣ କରି
ତା'ର ନିର୍ଘୋଷରେ ସୃଷ୍ଟିକରେ ମୌନ ଆତ୍ମାର ଯେ ସ୍ତବ୍ଧ ସଙ୍ଗୀତ
ଦୁଷ୍ଟ ଗ୍ରହର ଅଧିବାସୀ ସେଇ କୁତ୍ସିତ ଶିଳ୍ପୀ-ଶୟତାନକୁ ମୋର ପ୍ରଣାମ ।

ଯେ ଶୟତାନ ମୋର ଆଖିର ଅଶ୍ରୁକୁ ବୀଭତ୍ସ ଆନନ୍ଦରେ ସୁରାଭଳି ପାନକରି
ନିର୍ଲଜ୍ଜ ଉନ୍ମାଦନାରେ ମୋର ରକ୍ତାକ୍ତ କ୍ଷତ ଉପରେ ଫୁଟାଏ କଣ୍ଟକିତ ଗୋଲାପ
ସେ ଶୟତାନର ଶିଳ୍ପ-ଚାତୁରୀକୁ ମୋର ଧନ୍ୟବାଦ ।

ଯେ ଶୟତାନ ତା'ର ହିଂସ୍ର ନଖଦନ୍ତରେ ମୋର ଅସହାୟ ଶରୀରକୁ ବିଦୀର୍ଣ୍ଣ କରି
ମୋହରି ରକ୍ତରେ ହୋରି ଖେଳି ଉନ୍ମତ୍ତ ଭାବରେ ସୃଷ୍ଟିକରେ
ଆକାଶରେ ଇନ୍ଦ୍ରଧନୁର କବିତା
ସେ ଶୟତାନର କାରିଗରୀ ମୋର କାମ୍ୟ ।

ନିର୍ଜୀବ କ୍ରୀଡ଼ନକ ଭଳି ଯେ ଶୟତାନ ମୋତେ ହାତରେ ଧରି
ସ୍ୱର୍ଗ ନର୍କରେ ନଚାଇ ବୁଲେ
ମୋହରି ସ୍ୱପ୍ନରେ ସୃଷ୍ଟିକରେ ଆକାଶର ଅଗଣିତ ତାରକା
ମୋହରି ପ୍ରବୃତ୍ତିରେ ରଚନା କରେ ଅନ୍ତହୀନ ପାତାଳର ବିଚିତ୍ର ବର୍ଣ୍ଣୋତ୍ସବ
ସେ ଶୟତାନକୁ ମୋର ସ୍ୱାଗତ ।

ମୋହରି କରୁଣ କାତର ନିଃଶ୍ୱାସରେ ଯେ ରଞ୍ଜିତ କରେ ରାତ୍ରିର ଅନନ୍ତ ଗଭୀର ରୂପ
ମୋରି ଜୀବନ୍ତ ଶରୀର ଉପରେ ରଚନା କରେ ଯେ ଶ୍ମଶାନଗୃହୀ ଶିବ ଭଳି
ପ୍ରଳୟର ତାଣ୍ଡବ
ସକଳ ଅଶୁଭର ସେଇ ଶୟତାନ ମୋର ଉପାସ୍ୟ ।

ଯେଉଁ ଶୟତାନ ମୋର ସକଳ ସ୍ନାୟୁକୁ ଏକତ୍ରିତ କରି ପ୍ରସ୍ତୁତ କରେ
ତା'ର ବୀଣାର ତନ୍ତ୍ରୀ
ମୋତେ ନୀରବ, କରୁଣ ଓ ନିର୍ଜୀବ କରି ଝିଅଁଳା ଭବରେ ତୋଳେ
ତା'ର ବୀଣାର ଝଙ୍କାର
ଯେଉଁ ଝଙ୍କାରର ମୂର୍ଚ୍ଛନାରେ ମୁଁ ଜନ୍ମନିଏ ହିରଣ୍ମୟ ସୂର୍ଯ୍ୟ ଭଳି
ଗମ୍ଭୀର ତାମସୀ ରାତ୍ରିର ଗର୍ଭରୁ

ସଫଳ ହୁଏ ମୋର ରାତ୍ରିର ତପସ୍ୟା
ସେ ଶୟତାନ ମୋର ସିଦ୍ଧିଦାତା
ବିଚିତ୍ର କାବ୍ୟର ସ୍ରଷ୍ଟା—ମୋର ନିଭୃତ ଆତ୍ମାର କାରିଗର ।



# ପରମ ମୁହୂର୍ତ୍ତ

ଚିନ୍ତାମଣି ବେହେରା

●

ସେ କେବଳ ଗୋଟିଏ ମାତ୍ର ମୁହୂର୍ତ୍ତ—
ଜୀବନର କେଉଁ ଏକ ଅଜଣା ଅମୃତ ଲଗ୍ନରେ
ଅଯାଚିତ ଭାବରେ ଆସି ଦେଖାଦିଏ,
କେବଳ ଥରେ—ଦି'ଥର ବି ନୁହେଁ
ତା'ପରେ ସେ ହଜିଯାଏ ।
ଅନନ୍ତ କାଳର ବୃନ୍ତ ଭିତରେ
ସେ ଗୋଟାଏ ଅଜ୍ଞାତ ବିନ୍ଦୁ,
ତା'ର ଅବସ୍ଥିତି ଥାଏ
କିନ୍ତୁ ବସ୍ତୁତର ଅଭାବରେ ସେ ଲୋପ ପାଏ—
ସେ ନାମହୀନ, ସଂଜ୍ଞାହୀନ
ମାତ୍ର ଆପଣାର ଆଲୋକରେ
ସେ ରୂପବାନ୍, ଜ୍ୟୋତିର୍ମୟ ।
ସେ ହଜିଯାଏ—ତା'ର ଜ୍ୟୋତି ବି ଲିଭିଯାଏ
ଜୀବନର ବେଳା-ତଟରେ
କ୍ଷୁଦ୍ର ବାଲିକଣା ପରି
ତା'ର ସତ୍ତା ସେ ହରାଇ ବସେ,
କେବଳ ପରିଚୟ ଦେଇ ସେ ଭୁଲିଯାଏ ।
ତା'ପରେ ଆରମ୍ଭ ହୁଏ ତା'ର 'ଅନୁସନ୍ଧାନ'
ତାକୁଇ ଖୋଜି ମଣିଷ ପାଗଳ ହୁଏ
ସାରା ଜୀବନଟା ଜଳିପୋଡ଼ି
କେବଳ ଦହଗଞ୍ଜ ହୁଏ;
ଚେଷ୍ଟା କରି ବି ସେଥିରୁ ସେ ପାଏନା ନିସ୍ତାର;
ତାକୁଇ ଖୋଜି ଲୁହ ଲହୁ ସବୁ ନିଗାଡ଼ି ଦିଏ
ଦିଗହରା ଜାହାଜ ପରି
ଜୀବନଟା ଦରିଆ ମଝିରେ ଘୂରି ବୁଲେ
କୂଳ-କିନାରା କିଛି ପାଏନା ।
ଗିରିର ଅନ୍ଧାର ତଳେ
ଅଜ୍ଞାତ ଆଲୁଅର ଭୂତଟା

ବେଳେବେଳେ ଆସି ଦେଖାଦିଏ,
କିନ୍ତୁ ତା'ପରେ ସକାଳେ
ଜୀବନ୍ତତା ଅଧିକ କଲେ
ଅଧିକ ବ୍ୟଥାରେ ଦଗ୍ଧ ମନ ଘାରି ହୁଏ;
ସେ ପାଏ—କିନ୍ତୁ ନ ପାଏ ତାଠୁଁ ବେଶୀ
ଏଇ ପାଇବା ନ ପାଇବାର ସୂତାରେ
ଜୀବନର ଇତିହାସ ଚିରଦିନ ଗୁନ୍ଥା ହୁଏ
ସନ୍ଧାନ କେବଳ ତା'ର ସାର ହୁଏ ।
କେତେ ଚଇତ ଯାଏ—କେତେ ଫଗୁଣ ପୁଣି ଫେରେ
କିନ୍ତୁ ତାକୁ ସେ ଆଉ ପାଏନି,
ତାକୁଇ ଖୋଜି କବି କବିତା ଲେଖେ—
ଶିଳ୍ପୀ ନିଜ ମନର ମାଧୁରୀ ମିଶାଇ
ତା'ଆରି ପ୍ରତିମା ଗଢ଼େ—
ଚିତ୍ରକର ତା ଛବିରେ ରଙ୍ଗ ଦେଇ
ସେଇ ଅଭାବକୁ ମେଣ୍ଟାଏ;
ତଥାପି ସନ୍ଧାନ ତା'ର ସରେନା,
ଶୂନ୍ୟସ୍ଥାନ ପୂରଣ ହୁଏନା ।
ତା'ର ଅଭାବ ଜୀବନଟାକୁ ଘେରିବସେ
……ଜୀବନଟା ଯେ ଏଇ ଅଭାବ ।
ସଞ୍ଜ ସେପାରି କାଲେ ଦେଖା ହେବ
ଏଇ ଆଶାରେ ମଣିଷ ଚାଲେ
ସେ ଚାଲେ—ସମସ୍ତ ମଧ୍ୟ ଚାଲିଥାଏ,
ଚାଲି ସରେ—ବାଟ କିନ୍ତୁ ସରେନା;
ଆତୁରି ବାଞ୍ଛା—ବହୁତ, ବହୁତ
ଆଖି ପାଏନା ।
ସବୁ ସେ ଦେଇଦିଏ
କିନ୍ତୁ ତାକୁ ସେ ଆଉ ପାଏନା ।
ସେ ଫେରେ ନା—ଦଗା ଦେଇ ଚାଲିଯାଏ
ଜୀବନର ସେ କେବଳ
ଗୋଟାଏ "ପରମ ମୁହୂର୍ତ୍ତି" ।



# ଅବିଶ୍ୱାସ୍ୟ

ଚିନ୍ତାମଣି ବେହେରା

●

"Monster he killed many
But one he could not tame—himself"
(Sophocles : Haraclitus)

ମନେହୁଏ ଏ ନାବିକ ପ୍ରାଣ ମୋର ଦିନେ
କେଉଁ ଦୂର ନୀହାରିକା—ନକ୍ଷତ୍ର ବଳୟେ
ଆରମ୍ଭିଥିଲା ତା ଯାତ୍ରା
ଯେନ ଏକ ଅସୀମ ଉଦ୍ଦେଶ୍ୟ
କଳିବାକୁ ବିରାଟର ରୂପ—କରିବାକୁ ଜୀବନର ଶଷ୍ୟ ।

ସହସ୍ର ତରଙ୍ଗ ଭେଦ ବିକ୍ଷୋଭିତ ବାୟୁ ସାଗରର
ଅତିକ୍ରମି ତପ୍ତ ପଦେ ଜ୍ୟୋତିର୍ମୟ ଆଗ୍ନେୟ-ସରଣୀ
ଦେଖାଦେଲା ମୋ ନାବିକ ପ୍ରାଣ ପୁଣି ଦିନେ
ଶୀତ-କ୍ଷୁବ୍ଧ ଅମ୍ବୁଧିର ଶୂନ୍ୟ ବେଳା ଦେଶେ
ମାପିବାକୁ ସାଗର-ପରିଧି
ଅତଳାନ୍ତ ପ୍ରାଣ ଗଭୀରତା ।

ଅନେକ ଅନେକ ଶତ୍ରୁ
ପ୍ରତିପଦେ ଜୀବନର ପଥେ
ଆସିଛନ୍ତି ଗ୍ରାସିବାକୁ ମୋ ନାବିକ ଆଶା
ବୁଡ଼ାଇ ଦେବାକୁ ମୋର ପଣ୍ୟ-ତରୀ ପ୍ରଳୟ-ସାଗରେ
ଯୁଗଯୁଗ ସଞ୍ଚିତ ମୋ ସଫଳତା—ତପସ୍ୟାର ଶିକ୍ଷା ।

ଶତାବ୍ଦୀ ଶତାବ୍ଦୀ ଚଲି ଏଇ କ୍ଳାନ୍ତ ପୃଥିବୀର ପଥେ
ଅନେକ ଅରଣ୍ୟପଥ—ହିଂସ୍ର ସାଥୀ—ଗୁହା ଅନ୍ଧକାର
ଅତିକ୍ରମି ସବୁ କଷ୍ଟ—ବନ୍ଧୁରପଦେ ଦଳି ବିଘ୍ନରାଶି
ଲଗିଛି ମୋ ଯାତ୍ରା-ତରୀ ଆଜି ଏକ ଆଲୋକ-ବନ୍ଦରେ

ହୁଏତ କରିଚ ପୂର୍ଣ୍ଣ ପ୍ରାଣକକ୍ଷ ଈପ୍‌ସିତ ସମ୍ପଦେ
ଜ୍ୟୋତିର୍ମୟ ଜୀବନର ବେଦେ ।

ହତ୍ୟା ମୁଁ କରିଛି ପଥେ ଅତିକାୟ କେତେ ହିଂସ୍ରଜନ୍ତୁ
ରୋଧିଛି ଶ୍ୱାପଦ ଗତି-ଆସୁରିକ ହିଂସ୍ର ଆକ୍ରମଣ
ତାଡ଼କା-ପୂତନା ଅବା କଂସାସୁର କେତେ ଦଶାନନ
ବିନାଶିଛି ଯାତ୍ରାପଥେ ଗାଇବାକୁ ପ୍ରାଣର ବନ୍ଦନା
ପଢ଼ିବାକୁ ଆଲୋକର ବାଣୀ—କରିବାକୁ ନୂତନ ସର୍ଜନା ।

ସରଳତା—ବିଶ୍ୱାସର ମୈତ୍ରୀ-ପ୍ରୀତି ବଳେ
ଜିଣିଛି ମୁଁ କୋଟି ସ୍ୱପ୍ନ-ଦୁର୍ଗ
ଗାଇଚି ମୃତ୍ୟୁର ପୁରେ ନଚିକେତା ଅମୃତର ଗୀତା
'ମନୁପୁତ୍ର' ମୁଁ ମୃତ୍ୟୁର ଶାସ୍ତା ।

କିନ୍ତୁ ହାୟ ! ମନେହୁଏ କ୍ଷୁଦ୍ର ମୋର ପ୍ରାଣ-ତପ୍ତି ବୁକେ
କେବଳ ମୁଁ କରିନାହିଁ ଅଭିଷେକ ସ୍ୱର୍ଗ-ଦେବତାର
ଦେବତାର ପାର୍ଶ୍ୱେ ସଦା
ସମାସୀନ କରିଅଛି ଅଭିଶପ୍ତ ନର୍କ-ଶୟତାନ
ରୁଧିରକ୍ତ କରେ ଯେହୁ ହିଂସ୍ର ନଖେ—ତୀକ୍ଷ୍ଣ ଦନ୍ତେ
ମୋ ନିରତ ଅଗ୍ନି-ସ୍ୱଚ୍ଛ ଆତ୍ମା ।

ସମସ୍ତ ଗୌରବ ଭୁଲ—ଭୁଲ ସ୍ୱର୍ଗ ସାଧନାର ବାଣୀ
ଅବା ଶତ ବିଜୟ-ସଙ୍ଗୀତ
ପ୍ରାଚୀନ ଗହ୍ୱରେ ଯେବେ ଜାଗେ ଏଇ ଶୟତାନ ରୂପ
ରକ୍ତମୁଖ—ରକ୍ତତୃଷାତୁର
ସେତେବେଳେ ନିଜଠାରେ ନିଜେ ହୁଏ ଚରମ ବିସ୍ମୟ
ନିଜରେ ମୁଁ କରେ ଅବିଶ୍ୱାସ
ଦେବବଂଶୀ ଅଟଇ ମୁଁ ଅବା ଏଇ ଅସୁର ଗୋଷ୍ଠୀୟ ।

ଅନେକ ସାଧନା ପରେ-ସ୍ୱର୍ଗସିଦ୍ଧି-ଫଳପ୍ରାପ୍ତି ପରେ
ଜାଗିଛି ଆତୁର ଏକ ରକ୍ତମୁଖା ଦାନବ ମୋ ପ୍ରାଣେ
ହୁଏତ ଅଦମନୀୟ ଚିରଦିନ ଅବିଶ୍ୱାସ୍ୟ ପାଶେ
ଅଶାନ୍ତ, ଅଲଂଘ୍ୟ ତା'ର ରକ୍ତତୃଷା-ମାଂସ କ୍ଷୁଧା ପୁଣି

ରହିବ ଅନ୍ତରେ ମୋର ଆତତାୟୀ ଏ ଦଉ-ତନୟ
ସଂହ୍ୱାଦର ରୂପେ ସଦା ଶ୍ରେୟକାମୀ ଦେବପୁତ୍ର ସାଥେ ।

ହୁଏତ ମୁଁ ନିଜଠାରେ ବିବେଚିତ ହେଉଥିବି ନିଜେ
ଚିର ଏକ ଆସୁରୀ ବିମୂର୍ତ୍ତ
ଏକ ଗୃଧ୍ର ମନୁଷ୍ୟଖାଦକ
ନିଜର ରକ୍ଷକ ନୁହେଁ—ଅଟେ ବି ମୁଁ ନିଜର ଭକ୍ଷକ
ଦେବ-ଦୈତ୍ୟରୂପୀ ଏକ ସନାତନୀ ବିମୂର୍ତ୍ତର ଚିହ୍ନ
ବିଶ୍ୱାସ-ମୁକୁଟ ପିନ୍ଧା ଅବିଶ୍ୱାସ୍ୟ ମୋ ନିଭୃତ ରୂପ ।



# ଯୁଗ୍ମ ମିଳନ

ବିଦ୍ୟୁତ୍‌ପ୍ରଭା ଦେବୀ



ଆମ ରୁଷାରୁଷି          ମେଘରେ ବିଜୁଳିଗାର
ଆମ ମନଖୁସି          କୁଳୁକୁଳୁ ନଈ ଧାର ।

ଆମ କଳଗୋଳ          ସକାଳ ମେଘର ଡାକ
ଆମ ମନମେଳ          ସୁରଭିତ ଫୁଲହାର ।

ଆମ ହସକାନ୍ଦ          ଶରତ ଶିଉଳୀ ପରି
ମାନ ଅଭିମାନ          ପାହାନ୍ତାର କୁଆଁ ଭରି ।

ଆମ କଥାଭାଷା          ଅମାନିଆ ବଢ଼ିପାଣି
ଆମ ରାଗରୋଷ          ଖେଦୁଅର ଟାଣଖରା ।

ମନ ଖୋଲାଖୋଲି          କୁଆଁର ପୁନିଅଁ ରାତି
ବିରହ ମିଳନ          ସୂରୁଯ ଚନ୍ଦର ଭାତି ।

ପ୍ରଣୟ ଆମର          ପାହାଡ଼ୀ ଝରଣା ନାଚ
ସେନେହ ମମତା          ଅତଳ ଦରିଆ ଗୀତି ।

ଆମ କୋଳାକୋଳି          କୁନି ଶିଶୁ ଖନକଥା
ପ୍ରୀତି ଦୋଳାଦୋଳି          ମଳୟ ଉଲ୍ଲୁକୁମତା ।

ସୁଖ ଓ ଦୁଃଖର          କବିତା ଦୁଇଟି ଆମେ
ଭବ-ଉପବନ          ତରୁ ଲତାଶ୍ରିତ ଲତା ।



# ଖଦ୍ୟୋତିକା

ବିଦ୍ୟୁତ୍‌ପ୍ରଭା ଦେବୀ

●

୧—ପ୍ରଦୀପ

ନିରଳସ ଏକ ନୀରବ ଯାତ୍ରିକ ସମ
ସନ୍ଧ୍ୟାର ଏହି ସ୍ତିମିତ ପ୍ରଦୀପ ଗୃହେଁ
କ୍ଷିପ୍ର ମାନସେ ଚଞ୍ଚଳା ହିଜଳି ପରି
ସମୀରଣେ ଶିଖା ଶୂନ୍ୟେ ମିଳାଇଯାଏ ।

୨—ସିନ୍ଧୁ

କିଏ କହିବ ତା' ଅନ୍ତର ତଳେ
କିବା ଦୁଃସହ ଆବେଗ ଫୁଟେ
ଯୁଗ ଯୁଗ ଧରି ଉନ୍ମାଦ ସମ
କାନ୍ଦିକି ପଡ଼େ ସେ କାନ୍ଦିକି ଉଠେ ?

୩—ଝରା ଶେଫାଳି

କେଉଁ ଦେବତାର କ୍ଷଣିକ ଆଶୀଷ
ଶୁଭ୍ର ପାଖୁଡ଼ା ଧରି
ସୁନ୍ଦର ଏହି ଶରତ ସକାଳେ
ଭୂତଳେ ପଡ଼ିଲୁ ଝରି ?

୪—ପୁଷ୍ପିତା ଲତା

ପହିଲି ଫୁଲଟି ଧରି
ହସେ ନବ ପସୂତିକା ଲତା
ମୁଖେ ତା ଉଠିଛି ଫୁଟି
ଅନୁପମ ବାତ୍ସଲ୍ୟ ମମତା ।

୫—ପ୍ରକୃତି

ଦିବସେ ଆବରୁ ଧୋବ ପହରଣ
ନୀଳ ଛିଟ ଶାଢ଼ୀ ନିଶାରେ,
ତାପସୀର ବେଶେ କେବେ ଆସୁ କେବେ
ବାସକସଜ୍ଜା ଭୂଷାରେ ।

୬—କ୍ଷୀଳା-କନ୍ଦୁକ

ଦୁଇ ହାତେ ଦୁଇ କନ୍ଦୁକ ଘେନ
ଖେଳେ ପ୍ରକୃତ ବସି—
ଉଷା-କରେ ଧରେ ରକ୍ତିମ ରବି
ପ୍ରଦୋଷର କରେ ଶଶୀ ।

୭—ଷଡ଼୍ ଋତୁ

ରୂପେ ନିରୁପମା ଛଅଟି ଭଉଣୀ
ଗୋଟିଏ ଘରଙ୍କୁ ଜାତ,
ମୃଦୁ ପାଦ ପାତେ ଆସନ୍ତି ମରତେ
ଧରି ଜଣେ ଆନ ହାତ ।

୮—ମେଘ

ଶୂନ୍ୟ-ବିହଗ କେଉଁ ସାଇଜର
କାଉଁସି ମନ୍ତ୍ର ଜାଣେ,
ପକ୍ଷ ମେଲିଲେ ବଣେ ଖେଳଇ
କୋଟି ଜୀବ କୋଟି ପ୍ରାଣେ ।

୯—ବିଜୁଳି

କଳା କାହ୍ନା ପାଟଶାଢ଼ୀର
ଦୀପ୍ତ କନକ ଧଡ଼ି ସେ ?
କିଏ କହେ ଏହି ଚପଳା
ହେବ ବରଷା-ବଧୂର ମେଖଳା
ନଭ-ବନେ ଅବଲମ୍ବିକା
ଘନ-ତରୁରେ ରହିଛ ଜଡ଼ି ସେ
କଳା କାହ୍ନା ପାଟଶାଢ଼ୀର
ଦୀପ୍ତ କନକ ଧଡ଼ି ସେ ?

୧୦—ବଜ୍ର

କେଉଁ କ୍ରୁଦ୍ଧ ଦୁର୍ବାସାର
ଅଭିଶାପ-ବାଣୀ ଏଇ ଶୁଭେ
ଆତଙ୍କେ ପଡ଼ଇ ମହା-
ମେରୁଠାରୁ ତରୁଲତା ଭୁବେ ।

### ୧୧—ଇନ୍ଦ୍ରଧନୁ

କୁଆଡ଼େ କେଉଁ ନାହିଁ ମେଲାଇଦେଲା କିଏ
ଆକାଶ ପଥଧାରେ ରଙ୍ଗ ଛଟାଟିଏ ?
ମୁଗ୍‌ଧେ ଚାହୁଁ ଚାହୁଁ କେ ପୁଣି ଦେଲା ବୁଜି
କାହାର ଛଟା କିଏ ନ ହେଲା ଉଠିଲେ ବୁଝି ।

### ୧୨—କୁଆଁ ତାରା

ସରଗ ନଈର
ପଚାରୀ ତୁଠରେ
ପ୍ରଭାତ ସିନାନ ସାରି
ଗୁହ୍ନେ ଚଳେ ଉଷା
ଏଇ ପଦୁଅଁଟି
ସଚାଗେ ଗଭାରେ ମାରି ।

### ୧୩—ସାଧବ ବୋହୂ

ଏ ଲଗନେ ସତେ କେଉଁ ମାଆ ତା'ର
ଝିଅକୁ କରିଲା ବିଦା ;
ଆଖି ପାଉ ନାହିଁ ଡଗ ଡରୁ ନାହିଁ
ଚାହିଁଲେ ନୟନ ସିଧା ।
ପଥେ ଚାଲେ ବୋହୂ ସଘନ ଗଗନେ
ଗରଜେ ଅଶନିଭାଟ,
ଥିର ପାଦ ପାତେ ପ୍ରିୟ ଭବନେ ତା
ପହରି ଏ ନାଲି ପାଟ ।



# ତମିର-ସ୍ନାନ

ଦୁର୍ଗାଚରଣ ପରିଡା



ମୁଁ କଅଣ ଭୁଲ୍ କରଚ—
ଭୁଲ୍ କରଚ ତମକୁ ଭଲ ପାଇ
ତମର ଅଜାଣତରେ ?
ଆକାଶର ଗ୍ରହ ଚର
ଯେତେବେଳେ ଆତ୍ମପ୍ରକାଶ କରେ
ଅଶୁଭ ଏକ ଧୂମକେତୁ,
ସେତେବେଳେ
ସୁନା ଫସଲ ଗ୍ରହରେ ଆତଙ୍କ ଜାଗେ,
ତାରୁଣ୍ୟ ତ୍ରସ୍ତ ହୋଇ ଉଠେ,
ପୃଥିବୀ ଶିହରେ ତା'ର ଦର୍ଶନରେ ।
ତମେ ସେହିପରି ଶିହରି ଉଠିଲ,
ଯେତେବେଳେ
ତମର ଫୁଲ-ବଗ୍ଗ ଅଗଣାରେ
ମୁଁ ଆସି ଛିଡ଼ା ହେଲି,"
ମୁଁ—
ତମର ଭୟ,
ତମର ତ୍ରାସ,
ତମର ହୃତ୍କମ୍ପ,
ତମ ଯୌବନ-ଆକାଶର ଧୂମକେତୁ !
ତା' ନ ହୋଇଥିଲେ
ତମେ କଅଣ
ମତେ ଛଡ଼ି ଯାଇଥାନ୍ତ ?
ଏତେ ନିର୍ମମ ହୋଇ ପାରିଥାନ୍ତ ତମେ ?
ଶୁଣି ଯାଅ ।
ବିଦାୟ ଆଗରୁ
ଗୋଟିଏ କଥା ମୁଁ କହିବାକୁ ଚାହେଁ ।

ହିଳଏ ଠିଆ ହୁଅ ।
ଶୁଣ ।
ମୋର କଅଣ ଭୁଲ୍ ହେଉଚ,
ଭୁଲ୍ ହେଉଚ ତମକୁ ନ କହ୍ନ,
"ମୁଁ ତମକୁ ଭଲ ପାଏ ?"
ଥରେ ଗୁହଁ—
ଏଇ ତାସ୍ଵଆଡ଼େ,
ଉଜ୍ଜ୍ୱଳ ସଲଜ୍ଜ ଏଇ ତାସ୍ଵ ।
ପାଖରେ ତା'ର ଚନ୍ଦ୍ର—
ନିର୍ବାକ୍ ଅଥଚ ବାବଦୂକ,
ଗମ୍ଭୀର ଅଥଚ ଧ୍ଵଗଲ୍‌ଭ !
ଦୁହେଁ ବୁଝନ୍ତ
ଦୁହିଁଙ୍କ କଥା,
ଦୁହିଁଙ୍କ ବେଦନା ।
ଜଣଙ୍କ ରକ୍ତର ଢେଉ ଆଶ୍ରୟ ଖୋଜେ
ଅପରର ଶୋଣିତ-ସାଗର ଭିତରେ ।
ଚନ୍ଦ୍ରକୁ କଅଣ କହିବାକୁ ପଡ଼େ
'ମୁଁ ତମକୁ ଭଲ ପାଏ ?'

କହୁ ତମେ ?
ତମେ ମତେ ବୁଝିଲନ !!



# ନରକ

ଦୁର୍ଗାଚରଣ ପରିଡା



ତମ କଥା ଭାବିବା କଅଣ ଅନ୍ୟାୟ
ଯଦି ନୁହେଁ,
ତେବେ ଦୁର୍ବଳ ଲାଗେ କାହିଁକି
ତମ କଥା ମନେ ପଡ଼ିଲେ ?
ତମ ରୂପ ଆଖିରେ ଭାସିଲେ
ଆଖି ମୋର
ବୁଜି ହୋଇ ଆସେ କାହିଁକି ଭୟରେ ?

ତମର ମୁଗ୍ଧ ଦୃଷ୍ଟିର ସ୍ପର୍ଶରେ
ମୁଁ ତ୍ରସ୍ତ ହୋଇ ଉଠେ କାହିଁକି ?

ତମେ ମୋର ନୁହଁ ।
ତମେ ଆଉ କାହାର ।
ତମକୁ ଭାବିବା
ତେଣୁ ପାପ ।
କିନ୍ତୁ ମୁଁ ପଚାରେ
ତମକୁ ଭୁଲି ଯାଇଥିଲେ
ମୋର କଅଣ ପୁଣ୍ୟ ହୋଇଥାନ୍ତା ?

ଯଦି ତାହାହିଁ ହୁଏ
ତେବେ ସ୍ବର୍ଗେ ନାହିଁ
ମୁଁ ସେ ନିର୍ମମ ପୁଣ୍ୟ ।
ମୁଁ ଚାହେଁ ପାପ,
ମୁଁ ଚାହେଁ ନର୍କ—
ଯଦି ସେ ତମର ମମତାରେ ମମତାମୟ !



# ଗୋଟିଏ ଆଲୋକର ଆତ୍ମକଥା

ରବୀନ୍ଦ୍ରନାଥ ସିଂହ

●

ମୁଁ ଗୋଟିଏ ଆଲୋକ...
ଅନ୍ଧକାର ବିରୁଦ୍ଧରେ ମୁଁ ଜୀବନ ଭରି ଚଲାଇଛି
ଅକ୍ଲାନ୍ତ ସଂଗ୍ରାମ,
ତା'ର କୃଷ୍ଣ କରାଳ ଗ୍ରାସ ବିରୁଦ୍ଧରେ
ମୁଁ ଜଳି ଆସିଛି...ଜଳିବି...ସେ ଜଳିବାର ବିରାମ ନାହିଁ !

ମୁଁ ଜଳେ...
ରାତିର ପଦଧ୍ୱନି ଶୁଣି ଶୁଣି
ମୁଁ ଜଳେ...
ମୁଁ ଜଳେ...
ରାତିର ସାମ୍ରାଜ୍ୟ ଭେଦ କରି
ଲଣ୍ଠନ କାଚର କାରାଗାର ଭିତରେ
ମୁଁ ଜଳେ ।
( ଜଳିବାରେ ମୋର ଦୁଃଖ ନାହିଁ......ନାହିଁ ଅବସାଦ । )
ଦୁଃଖ କେବଳ ଏତିକି,
(ନିଦ୍ରାର ଭୁଜ-ବନ୍ଧନରେ ଆବଦ୍ଧ ହେବା ପୂର୍ବରୁ )
ମୋତେ କମାଇ ଦିଆ ହୁଏ ମାତ୍ରା !
ମୋର ସ୍ତିମିତ ଆଲୋକାତ୍ମାଟି ସେତେବେଳେ
(ଜଳିବାର ପ୍ରବଳ ଶକ୍ତି ଥିଲେ ବି) ପୂର୍ଣ୍ଣ ବିକାଶପାଇଁ
ରୁଦ୍ଧ ବେଦନାରେ ହାହାକାର କରି ଉଠେ ।
ମୁଁ ଆଲୋକ
ଜଳିବାପାଇଁ ମୋର ଜନ୍ମ ।
ସଂସାରରେ କେବଳ ଜଳିବା ଛଡ଼ା ମୋର
ଅନ୍ୟ କିଛି ନାହିଁ !
ତଥାପି ମୁଁ ଜଳିବାକୁ ପ୍ରସ୍ତୁତ ।
ତମସାଚ୍ଛନ୍ନ ରାତିର ବକ୍ଷ ଭିତରେ,

ଅନାଗତ-ସକାଳର ଆଦ୍ୟ ରଶ୍ମିପାତ ପର୍ଯ୍ୟନ୍ତ···
ମୁଁ ଜଳୁଥିବ ।
(କିନ୍ତୁ ଅର୍ଦ୍ଧକ୍ରନ୍ଦନର ଅଭିଶାପ ତ ମୁଁ କାହାକୁ ମାଗି ନାହିଁ !)
ଲଣ୍ଠନର ଚାବିକୁ ଯେତେବେଳେ ଅଜ୍ଞାତକୁ ଘୂରେଇ ଦିଆଯାଏ,
ସେତେବେଳର ଦୃଶ୍ୟ (ଆଃ !) କେହି ଦେଖିଛ ?
କ'ଣ କହିବାକୁ ଚାହେଁ ବନ୍ଦୀ ଆଲୋକର ଆତ୍ମା—ଜାଣିଛ ?
ସେ କହିବାକୁ ଚାହେଁ—
"ଲିଭାଇ ଦେବତ ଲିଭାଇ ଦିଅ,
ଲିଭିବାକୁ ପ୍ରସ୍ତୁତ !
ଜାଳିବ ତ ପୂର୍ଣ୍ଣମାତ୍ରାରେ ଜାଳ,
ଜଳିବାକୁ ପ୍ରସ୍ତୁତ !
କିନ୍ତୁ,
ଆଲୋକର ଆତ୍ମାକୁ ଅଧା କବର ଦେଇ
ନିଶ୍ଚିନ୍ତରେ ଶୋଇ ପଡ଼ିବାର ଏ ସ୍ୱାର୍ଥପରତା କାହିଁକି ?"

ଅନ୍ଧକାରର ସାମ୍ରାଜ୍ୟ ଭିତରେ
ଆଲୋକ-ଆତ୍ମାର ସେହି ଅର୍ଦ୍ଧମୃତ ଚେହେରା,
ତା'ର ସେହି ଅସ୍ତଚନ୍ଦ୍ରର ସ୍ୱରୂପ
କେହି ଦେଖିଛ ?
କେହି ଶୁଣିଛ ତା'ର ସେହି କରୁଣ ଅଥଚ ବୈପ୍ଲବିକ ଅଭିବ୍ୟକ୍ତି ?
ନା, କେହି ଦେଖିନ ! କେହି ଶୁଣିନ ।
ଦେଖିଛୁ, ଶୁଣିଛୁ କେବଳ ସେହି, ଯିଏ ନିଶବ୍ଦ ରାତିରେ
ଅନେକ ବାର (ନିଦ ବାଉଳାରେ) ଉଠି କାନ୍ଦେ,
ଅର୍ଦ୍ଧ ସମାଧିସ୍ଥ ଆଲୋକଟିକୁ
ଚାହିଁ ମନକୁ ମନ ହସେ—
ଚାରିଆଡ଼କୁ ଅନାଇ ମନକୁ ମନ ଶୋଇ ପଡ଼େ···
ସେହି 'ଗ୍ରେଟ୍' ଶି-ଶୁ-ଟି··· ।



# ସ୍ୱାର୍ଥପର ଈଶ୍ୱର

ଉମାଶଙ୍କର ପଣ୍ଡା



ସ୍ୱାର୍ଥପର ଈଶ୍ୱରଙ୍କୁ ଡାକିବାରେ
ଲାଭ କ'ଣ ? ଡାକିବାକୁ ଛାଡ଼ିଦେଇ
ଫେରିଯିବା ପରେ ନିଃସଙ୍ଗ ଘରକୁ
ଏବଂ ଫେରିବାକୁ କଣ୍ଢେଇମାନଙ୍କ ସହ
ନିଜସ୍ୱ ଦୁଃଖକୁ ରେଶମ ସୂତାରେ ବାନ୍ଧି
ଫିଙ୍ଗିଦେଇ ଯିବାପରେ
ନିଛାଟିଆ ସମୁଦ୍ର କୂଳରେ ।

ଦ୍ରୌପଦୀର ଚିର ଶାଢ଼ୀରେ
କେଉଁ ବିଶ୍ୱାସ ଓ ଲଜ୍ଜାକୁ ଢାଙ୍କି ହେବ ଯେ
ସମସ୍ତ ଇଚ୍ଛାକୁ ହ୍ୟାଙ୍ଗର୍‌ରେ ଝୁଲେଇ ଦେଇ
ଚୁପ୍‌ଚାପ ଶୋଇଯିବ ଶୋକାତୀତ
ଅଦୃଶ୍ୟ ମୁହୂର୍ତ୍ତର ନିର୍ଦ୍ଦିଷ୍ଟ ଶେଯରେ ।
ପ୍ରତିଦ୍ୱନ୍ଦ୍ୱିତାରେ ହାରିଯିବା ପରେ
କେଉଁ ମନ୍ଦିରର ଦ୍ୱାର ଖୋଲା ହେବ !
କାହାକୁ ବା ବିନା ସର୍ତ୍ତ ବାଜି ରଖି
ଚଢ଼ିଯିବ ବାଇଶି ପାହାଚ ?

ଚୌରାସ୍ତାରେ ଟ୍ରାଫିକ୍ ପୋଲିସ୍
ହାତ ଦେଖେଇଲେ
ପାପର ହିସାବ ଖାତା । କାନ୍ଥ ଘଣ୍ଟା
ଚଉଡ଼ା ମୁହଁ, ଇସ୍ତ୍ରୀକର୍ ପୋଷାକରେ
ଅମଳ ରହିବା ଛଡ଼ା ଗତି କ'ଣ ?
ନିରନ୍ତର ସମୟର ବ୍ୟର୍ଥ ପ୍ରତୀକ୍ଷାରେ ।

ଭଙ୍ଗା ଦର୍ପଣରେ
ସମସ୍ତର ଅପରାଧୀ ମୁହଁ
ଆଲୁଅ ଓ ଅନ୍ଧାରର ଅବୈଧ ସମ୍ପର୍କ
ଘାଣ୍ଟୋଉ ଯାଉଥିବା ମୃତ୍ତମାନଙ୍କର
ଅଦୃଶ୍ୟ ହାତ ଧରି
ଓହ୍ଲାଇ ଯିବାଛଡ଼ା ମୁକ୍ତ କାହିଁ
ନରକର ପ୍ରଶସ୍ତ ପଥକୁ ।

ଆଉ କେହି ନିଷ୍ପତ୍ତିର ଅପେକ୍ଷାରେ
ବନ୍ଦ କରି ସାରବନ୍ଦୀ ଦରଜା ଝରକା
ସୁନ୍ଦର ସକାଳ ଏବଂ ଆସନ୍ନ ମଧ୍ୟାହ୍ନ
ହାରି ଦେବ ଚହଲି ବାକୁ
ସତ କଏ, କଏ ମିଛ
କଏ ଅବା ପ୍ରାଣର ଦୋସର
ବିବେକ ନା ସ୍ୱାର୍ଥପର ଈଶ୍ୱର ।



# ନିର୍ଜନ କୋଠରୀ

ଜୀବନାନନ୍ଦ ପାଣି

●

ସମସ୍ତଙ୍କୁ ଏସ୍‌ଟ୍ରେରେ ଜାକି
ପୁଣି ଥରେ ସିଗାରେଟ୍ ଧରେଇଛି—ଟାଣିପାରୁ ନାହିଁ;
ସେ ଧୂଆଁରେ ଜୀବନ ଉଡୁଛି
ଭଙ୍ଗ ମୋଡ଼ ହେଉଁ ହେଉଁ ଅନେକ ଠାଣିରେ ।

ମୁଁ ଜାଣେ ମୋ ବାପାଙ୍କର ଭଙ୍ଗା ଆଶାବାଡ଼ି
ଏଇ ଘରକୋଣେ ରହି ମୋତେ ଚାହିଁ ଚାହିଁ
ମନେ ମନେ ଧିକ୍‌କାରୁଛନ୍ତି, "କୁଳାଙ୍ଗାର" କହି ।
କ୍ଷମାକର ବାପା,
ତୁମ ଅନ୍ତେ ମଧ୍ୟ ତୁମ ଭଙ୍ଗା ଆଶାବାଡ଼ି
ଯୋଡ଼ି ପାରିଲିନି ଅବା ନୂଆ ଗୋଟେ ତିଆରି କରେଇ
ତୁମ ପଙ୍ଗୁ ଗୋଡ଼ର ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଦେଇପାରିଲି ନି ।

ତୁମେ ଯେଉଁ ଛୁଟନ୍ତା ରେଳରୁ
ମୋତେ ଦେଖି ଭାବୁଥିଲ ମୋ କୋଠରୀ ଅନ୍ୟ ରେଳଡବା
ତୁମକୁ ଆଡ଼େଇ ଦେଇ ପଛଆଡ଼େ ନିର୍ଧୂମ ଛୁଟିଛି,
ମୁଁ ବି ସେଇଆ ଭାବୁଥିଲି ତୁମଆଡ଼େ ଚାହିଁ—
ସେ ରେଳଟା ଫାଏଁକିନା ଚାଲିଯିବା ପରେ
ବୁଝିଲି, ମୋ କୋଠରୀ ଓ ମୁହିଁ
ଯେଉଁଠି ସେଇଠି ଖାଲି ଆଗଠାରୁ ବେଶି ନିଶୁଟିଆ ।

ମୁଁ ଜାଣେ ଏ କୋଠରୀର ଅନ୍ୟ କେଉଁ କୋଣେ
ମୋ ମାଆର ଜପାମାଳି ଝୁଲୁଥିବ କୋଥଳୀ ଭିତରେ
ସେ ମୋ'ଆଡ଼େ ଚାହିଁ ଚାହିଁ କହୁଥିବ,
"ବାପାରେ, ତୁ ଠାକୁରଙ୍କୁ ଡାକ୍ ।"
ଅବୁଝଣୀ ମାଆ ଗୋ ମୋତେ ନିଶ୍ଚୟ ତୁ କରିଥିବୁ କ୍ଷମା ।

ତୋ ଆଖି ଲୁହରେ ମୋର ସମସ୍ତ ବଜ୍ଞାନ
ହାରିଗଲା; କେବେହେଲେ ହୋଇପାରିଲାନି
ତୋ ଆଖିରେ ଚକ୍ଷୁ ଆରୋପିତ ।
ଅନ୍ଧ ବୋଲି ତୁ ହୁଏତ କହୁଥିଲୁ ମୋତେ
ସେଇ ରେକର୍ଡ଼ଟା ତୋତେ ସବୁଦିନେ ଶୁଣାଇବାପାଇଁ
"ସ୍ୱାମୀରେ ଅନ୍ଧ ନୟନ ଭବ-ପାରାବାରେ ।"
ଯାହା ଏତେ ପୁରୁଣା ଯେ ବାଜୁଥିବାବେଳେ
ଖସ୍ ଖସ୍ ଶବ୍ଦସବୁ ଗୀତଠାରୁ ବେଶୀ ଶୁଣାଯାଏ ।
ବାଜୁ ବାଜୁ ରହିଯାଏ, ଗଁ ଗଁ ହୁଏ
ଏବଂ ମୁଁ ଜାଣେ ନାହିଁ କେମିତି କେଉଁ ଆବେଗରେ
ସେ କମ୍ପିତ ଚକମାକାର ଶବ୍ଦ-ସମୁଦ୍ରରୁ
ଆହରୁ ତୁ ଗୀତଟାର ଅର୍ଥ ।
ହୁଏତ ମୁଁ ତୋ ଅନୁଭବରେ ଦିଶୁଥିଲି ଖୁବ୍ କୁହୁଡ଼ିଆ
ତୁ ବି ମୋତେ ଦିଶୁଥିଲୁ ଠିକ୍ ସେମିତିକା—
କିନ୍ତୁ କିଏ ଥିଲା କୁହୁଡ଼ି ଭିତରେ ?

ମୋ କୋଠରୀ କାନ୍ଥମାନେ ହଜାର ହଜାର
ଆଇନା ଓ ଘଣ୍ଟା ହୋଇ ମୋତେ ଦେଖୁଛନ୍ତି ।
ଟିକ୍ ଟିକ୍ ମାରବତା ଭିତରେ ମୁଁ ଦେଖୁଥିଲି ହଜାରେଟା ମୋତେ
ଏବଂ ସେମାନେ ସମସ୍ତେ ଗୋଟେ ଗୋଟେ ସିଗ୍ରେଟ ଧରେଇ
ଟାଣି ପାରୁନାହାନ୍ତି ବା ଟାଣିବାକୁ ଭୁଲି ଯାଇଛନ୍ତି ।



# ଜହ୍ନରାତି

ରମାକାନ୍ତ ରଥ



ଯେତେକ ପଡ଼ିଆ ଜମି ସବୁ ମିଶି ଗୋଟିଏ ସଫେଦ୍
ବିଛଣା ଚାଦର ଯା'ର ଶେଷ କାହିଁ ଆରମ୍ଭ ବା କାହିଁ,
ଠିକ୍ ମୋର ଦେହ ପରି । ଆକାଶ ବି ପ୍ରାୟ ତମ ପରି ।

ବେଳେବେଳେ ମନେହୁଏ ମୁଁ ଆକାଶ, ପ୍ରଶସ୍ତ ଅଥଚ
ଫାଙ୍କା, ଏବଂ ଦେଖୁଅଛୁ ପୃଥିବୀ ଯେପରି
ତମେ ଠିକ୍ ସେହିପରି ମେଲା କରିଅଛ ହାତମାନ,
ଯେଉଁଠାରେ ଓହ୍ଲାଇଲେ ସେହିଠାରେ ତମ ଆଲିଙ୍ଗନ ।

ଦୂରରେ ଦିଶୁଛି ଜମି ଓ ଆକାଶ
ମିଶିବାର ଭ୍ରମ ।
ତମେ ହେଲେ ଉଡ଼ିଆସ ପ୍ରବାସରୁ
ହେ ମୋ ବିହଙ୍ଗମ ।
ମୁଁ ଏଠାରୁ ପାରିବିନି ଉଠି କାଳେ
ଜହ୍ନ ବୁଡ଼ିଯିବ ।
କାଳେ ମୁଁ ଫେରିବାବେଳେ ସୂର୍ଯ୍ୟାଲୋକେ
ବାଟ ନ ଦିଶିବ ।



# କଳାହଂସ

ରମାକାନ୍ତ ରଥ



ତା ଦେହକୁ ଖୁବ୍ ମାନେ ପୂରାହାତ କଳା ସ୍ୱେଟର୍ । ସେ
ସାଇଁ ସାଇଁ ବୋହୁଥିବା ଶୀତର ପବନ
ଠାରୁ ରକ୍ଷାକରେ ଜୁଳୁଜୁଳିଆ ପୋକଙ୍କ
ଦପ୍ ଦପ୍ ନୀଳ ଦୀପ ଠୋଲା ପାପୁଲିରେ ।

ମୋର ବନ୍ଧୁମାନେ ଚାଲି ଗଲେଣି ହଠାତ୍
ଝଡ଼ ବର୍ଷା ହେବା ଆଶଙ୍କାରେ ।

ଚାକରାଣୀ ଚାଲିଗଲା ପ୍ଲେଟଗ୍ଲାସ୍ ଇତ୍ୟାଦି ଉଠାଇ ।
ବର୍ତ୍ତମାନ ସେ ହେବଣି ତା ଘର ପାଖରେ ।

ଲୋକେ ଆସିଛନ୍ତି ଚାଲିଯାଇଛନ୍ତି ସବୁଦିନ ଲାଗି,
କେତେ ଫେରି ଆସିଛନ୍ତି ଚାଲିଯିବା ଲାଗି ପୁନର୍ବାର,
କେତେ ଜଣ ଛାଡ଼ିଗଲେ ତମ୍ବାପଟା, ଶିଳାଲିପି, ଫଟୋଗ୍ରାଫ୍ କିମ୍ବା ପ୍ରତିମୂର୍ତ୍ତି ।
କି ଆଶ୍ଚର୍ଯ୍ୟ, ମହାନଦୀ ବୋହିଯାଏ ଯେପରି ତା କୂଳରେ ଦେଉଳ
ତୋଳିଥିବା ଲୋକଙ୍କର ନାଆଁ ଆଜି ମନେ ନାହିଁ ତା'ର ।

ଭଗବାନ ରକ୍ଷାକର ସେ ଅନାମଧେୟ ନିର୍ମାତାଙ୍କୁ ।
ଶୀତପକ୍ଷୀ ରଡ଼ିଛାଡ଼େ, ପ୍ରାର୍ଥନାର ପଛେ ପଛେ ମୋର
ତା ରଡ଼ି ଗୋଡ଼ାଇ ଯାଏ ନଈ ମୁହାଣକୁ ,
ଏବଂ ସେଠି ଶୂନ୍ୟତାରେ ଯେଉଁଠାରେ କିଛି ହେଲେ ନାହିଁ
ଦେହ ହୁଏ ମୂର୍ତ୍ତି, ମୂର୍ତ୍ତି ହୁଏ ନିଦ ବୁଡ଼ା ପହରିବାଲାର
ସ୍ୱପ୍ନ ରାଜବାଟୀ ଦ୍ୱାରେ ଯା'ର ଦିବ୍ୟ ଅଗଣିତ ତୋରଣଙ୍କ ପରେ
ଅପନ୍ତରା ଠାଏ ଠାଏ ପୁଣ୍ଡି ଦିଶେ ସିଙ୍ଘୁରୁଦା ଖପରା ଗଦାରେ ।

ଅନୁକମ୍ପା ମରିଥିବା ଲୋକଙ୍କ ନିମିତ୍ତ
ବା ଉତ୍ତରପୁରୁଷଙ୍କର ଲାଗି ଶୁଭେଚ୍ଛାରେ
ପାଗ ବଦଳିବ ନାହିଁ ଧଡ଼୍‌ଧାଡ଼୍ ଫିଟିଯିବ ନାହିଁ
ଜେଲଖାନା ଦର୍ଜା ଏ ଝଡ଼ରେ,

॥ ୯୯ ॥

ଅଥବା ବର୍ଷାର ଅଣ୍ଡା ପାଣି ଟୁହିକାରେ
ଅର୍ଥଶୂନ୍ୟ ଭବିତବ୍ୟ ଉଠିବନ୍ନ ପକ୍ଷଭ୍ରଷ୍ଟ ହୋଇ ।
ସେ କଳା ସ୍ଲେଟର ପିନ୍ଧା ଲୋକ ଲାଗି ଏ ଡର ନଥିବା
ଅଁକାଶ ଦର୍ପଣ, ତା କଳା କାଚରେ
ମୁହଁ ଦେଖି ସେ ହୁଏତ ମୁଣ୍ଡ କୁଣ୍ଡେଇବ
ଦପ୍‌ଦପ୍‌ ଇତସ୍ତତଃ ନୀଳ ଅଁଲୁଅରେ ।

ସେ ତା ପୂର୍ବାହ୍ନ କଳା ସ୍ଲେଟ୍‌ରରେ ଦଶେ
ଅଙ୍କାସ୍ତ ଗ୍ରୁଇପରି, ପାହାଡ଼ଠୁଁ ଡେଙ୍ଗା ଏବଂ ଗ୍ରନ୍ଥାପଣ ବଳଠୁଁ ଚଉଡ଼ା ।
ସେ ଠିଆ ହୋଇଛି ଝର୍କା ଚୌକାଠ ବାହାରେ
ଓ ଝର୍କା ଏପାଖେ ମୋର ଅଲୋକିତ କୋଠରୀ ଗହ୍ୱଳ
ତା ଅସଂଖ୍ୟ ପାଚୀନ ଗ୍ରୁଇରେ ।
ତା ଗ୍ରୁଇରେ ଭର୍ତ୍ତି କାନ୍ଥ ଆଲ୍‌ମିରା, ସୁଟ୍‌କେଶ୍‌, ଟେବୁଲ୍‌ର ଖୋପ,
ଧୋବ କାନ୍ଥ ଉପରେ ତା ଗ୍ରୁଇ,
କେତେ ଗ୍ରୁଇ ଜଣାଯାନ୍ତି ଚହ୍ଲା ଚହ୍ଲା । ମାଟି ବାସ୍ନା ପୂର୍ଣ୍ଣ ସଜହସ
ସବୁ ଗ୍ରୁଇମାନଙ୍କ ମୁହଁରେ ।

ମାଟି ବାସ୍ନା ବନ୍ଦକରେ ନିଃଶ୍ୱାସ-ପ୍ରଶ୍ୱାସ,
ହସ କନ୍ଦୁ ବଡ଼ ଚମତ୍କାର,
ଖିଲ୍‌ଖିଲ୍‌ ହୋଇ ଶୁଭେ କୁଳୁକୁଳୁ ନଈପାଣି ପରି
ଘୁପିଦେଇ କେତେ କାନ୍ଦ କେତେ ଦୀର୍ଘଶ୍ୱାସ,
କୁକୁରଙ୍କ ଲମ୍ବା ବାହୁନା ଓ
ବିଲୁଆଙ୍କ କାନଫଟା ହୁକେ ହୋ ଚିତ୍କାର ।

ମୋର କେବେ ଇଚ୍ଛା ହୁଏ ବସିବାକୁ ସେପରି ହସ ଓ
ଘୁପିଦେବା ଲାଗି କେତେ ଭୟଙ୍କର କୋଳାହଳ ଯାହା

ହେ ଈଶ୍ୱର ତମକୁ ଗୋଚର ।



# ମାଷ୍ଟ୍ରାଣୀ

**ରମାକାନ୍ତ ରଥ**



ଦୁଇ ଆଉ ଦୁଇ ମିଶି ଚାରି, ଏତେ ସ୍ପଷ୍ଟ ସତ୍ୟର କାହିଁକି
ଲୋଡ଼ା ମୋର ଯୌବନର ସାହାଯ୍ୟ ? ଚାହେଁ ନା ଚାହେଁ ମୁଁ
ଯୌଢ଼ା ହୋଇଯିବି ଏବଂ ଚଷମାର ମୋଟା ଫ୍ରେମରୁ ମୋ
ପଶି ଯାଇଥିବା ଗାଲ ଝୁଲୁଥିବ ବାଦୁଡ଼ି ପରି, ବା
ମୁଁ ଯୋଷାକ ଗ୍ଧିଲୁଥିବ ଅସହଜ, ସ୍ଥୂଳ ଶରୀର ।
ସେତେବେଳେ ମଧ୍ୟ ମତେ ଦୁଇ ଏବଂ ଦୁଇ ମିଶି ଚାରି
ବୋଲି କହିବାକୁ ହେବ । ମୁଁ ସତ୍ୟର ଖୁବ୍ ଦରକାର,
ସବୁବେଳେ, ମୁଁ କ'ଣ ଚାହୁଁଛି ତାକୁ ? ବୋଧେ ବେଳେବେଳେ
ଗୋଟେ ଅଧେ ମିଛ କଥା ମତେ ବେଶ୍ ଆରାମ ଦିଅନ୍ତେ ।
ଉଜ୍ଜ୍ୱଳ କୋଠରୀ ନୁହେଁ ସର୍ବାଧିକ ଶ୍ରେୟ ସବୁବେଳେ ।
ସେମାନେ କହନ୍ତି କନ୍ୟା ଭବିଷ୍ୟତ ମାନେ ମୋ ଦେଶର
ମୋ ହାତରେ ଅଛନ୍ତି ଓ ମାତା, ପିତା ସବୁ ମୁଁ ତାଙ୍କର ।

ମୁଁ ଚାଲି ଆସିଛି ଛାଡ଼ି ବହୁତ ଜିନିଷ; ପ୍ରଥମତଃ, ଘର
(ବୈକୁଣ୍ଠ ସମାନ ଅନ୍ଧା ଅଟେ ସେହିଘର); ଦ୍ୱିତୀୟତଃ,
ବାପାଘର (ଭଲ ବୋଧେ ଲାଗିଥାନ୍ତା ବଉଳପାଟକୁ
ସାଦା କରି ପିନ୍ଧି ଲାଜି ଲାଜି ଚାଲିଥିଲେ, ବା ପାତଳ
ହଳଦିଆ କାଗଜରେ ପଢ଼ିଥିଲେ ଗୀତ ଯେ କାହିଁକି
ମଙ୍ଗଳ ବାଜଣା ବାଜେ, ବହେ ଶ୍ୱେତ ଚଇତାଳି ଏବଂ
କୁହୁକୁହୁ ଗାଏ ପିକ, ହେ ବିଦେଶୀ ଅମର ଅପାକୁ
ଘେରି କାହିଁ କରି ନିଅ, ଯା ହେବାର ହେଲାଣି ଏଣିକି
ନବ ଦମ୍ପତିଙ୍କ ଶିରେ ଢ଼ାଳ ପ୍ରଭୁ ତମ କୃପାବାରି);
ତୃତୀୟତଃ, ମାତୃତ୍ୱ (ମୁଁ ନୂଆ ନୂଆ ଉଜାଇନ୍ ଶିଖି
ଜାମା ପେଣ୍ଟ୍ କରିଥାନ୍ତି ସୂକ୍ଷ୍ମ ଛୁଞ୍ଚୀ କାମରୁ ବି କିଛି);
ଚତୁର୍ଥତଃ, ପ୍ରେମ (ଏବଂ ସାଙ୍ଗହୋଇ ମେଳା ଦେଖିଯିବା);
ଏପରି ଅନେକ କିଛି ଆଦ୍ୟ ଯୌବନରୁ ଛାଡ଼ିଅଛି ।

ସତ୍ୟର ବି ପ୍ରୟୋଜନ ଏ ଅବସ୍ଥା (ନି ସ୍ୱାର୍ଥ ତ୍ୟାଗର) ।
ସୁତରାଂ ମୁଁ ହୁଏତ ଦୁଇ ଏବଂ ଦୁଇ ମିଶି ଚାରି
କହିବାକୁ ଉପଯୁକ୍ତ—ଆଜି, କାଲି, ବର୍ଷ ବର୍ଷ ଧରି ।

ବହୁତ ହଳଦୀବର୍ଣ୍ଣ ସକାଳ ଓ ଅସଂଖ୍ୟ ସଫେଦ୍
ଦ୍ୱିପ୍ରହର ଓ ବହୁତ ଅପରାହ୍ଣ ନାରଙ୍ଗ ରଙ୍ଗର
ଫୁଟନ୍ତି ମୋ ବଗିଚାରେ ନାନାରଙ୍ଗ ଫୁଲପରି । ଏହି
ବଗିଚା ସୁନ୍ଦର ଜାଗା—ପରିଷ୍କାର, ନିସ୍ତବ୍ଧ, ଶୀତଳ ।
ମୁଁ ସୁତରାଂ ଏଠି ବସେଁ ଫୁରୁସତ୍ ବେଳେ, ଭଲଲାଗେ
ନିଜକୁ ଦେଖିବା ଲାଗି, ଅକ୍ଷିପକ୍ଷେ ହେଉ ଛଳଛଳ ।
ସବୁଠାରୁ ଭଲଲାଗେ କାମଦାମ ସାରି ଖାଇଦେଇ
ହାତରନ୍ଧା ଖାଇବା ଓ ବଦଳାଇ ଦେଇ ଲୁଗାପଟା
ପାନ ଖିଲେ ଖାଇ ଏକ ଚଉକିରେ ଏଠି ବସିବାକୁ ।
ଏ ବଗିଚା ପରିଷ୍କାର, ମାଟି ତା'ର ବାରମ୍ବାର ଖୋଳି
ଖରାରେ ତା ଅଳ୍ପ ପୋଡ଼ି, ପୋକଜୋକ ଏବଂ ଚେରମୂଳ
ସବୁ ନଷ୍ଟ କରି ତାକୁ ମୁଁ ବସିବା ଲାଏକ୍ କରାଇ
ଏଠି ବସେଁ । ଅଉ କିଛି ଅର୍ଥ ନାହିଁ ଏହି ବଗିଚାରେ ।
ଋତୁ ବନ୍ଦ ହୋଇଯିବା କିମ୍ବା ଧୁଡୁ ଧୁଡୁ ଚମଡ଼ାର
ଅସ୍ୱସ୍ତି ଲାଗିବ ନାହିଁ । ଏ ବଗିଚା ବଡ଼ ଚମତ୍କାର ।

ଏ ବଗିଚା ଚମତ୍କାର, ଯଦିଓ ତା ଭିତରେ ବସିଲେ
ରାତି ସାରା ଜଣାଯିବ ମୁହୂର୍ତ୍ତିକ ପରି ଏହି କଥା
ନିଶ୍ଚୟ ଅତିରଞ୍ଜନ । ସତ କଥା କୁହାଯାଉ, ଷାଠି
ସେକେଣ୍ଡ୍ ଏଠାରେ ଲାଗେ ମିନଟ୍କ ପରି ଓ ପ୍ରତ୍ୟେକ
ମିନଟ୍ ଘଣ୍ଟାକ ପରି, ପ୍ରତି ଘଣ୍ଟା ବହୁତ ଶତାବ୍ଦୀ
ପରି ଲାଗେ, ମୋର ଗୋରା ଛଟପଟ ଦେହ ମିଶିଯାଏ
ଓସ୍ତାଦଙ୍କ ଦୂର ବାସ୍ନା ସାଙ୍ଗେ ଏବଂ ଅଦୃଶ୍ୟ ଅନେକ
ଝିଙ୍କାରୀଙ୍କ ଶବ୍ଦ ସାଙ୍ଗେ ଖୁବ୍ ବେଶୀ ଦୁଇଟି ଘଣ୍ଟାରେ ।
ମତେ କେତେ ବର୍ଷ ହେଲା ? ପନ୍ଦର, ନା ପଚିଶ, ଷାଠିଏ ?
ମୁଁ ଜାଣେନି, ମୁଁ କେବଳ ଦେଖୁଅଛି ଏକ ଅବାନ୍ତର
ଯୌବନ ମିଳାଇ ଯାଏ ଲକ୍ଷ୍ୟହୀନ ଏକ ବାର୍ଦ୍ଧକ୍ୟରେ

ଯେପରି କୌଣସି ଚଳନ୍ତି ସ୍ତନ ଏକ ବିବସ୍ତ୍ରା ନାରୀର
ବିଜୁଳିରେ ଆଲୋକିତ ଝରକାର କାଚ ସାଙ୍ଗେ ମିଶେ
ଓ ତାହାର ପଛଆଡ଼ ମିଶିଯାଏ ସଫେଦ୍ ପର୍ଦ୍ଦାରେ
ଯାହା ଝୁଲେ ଫୁଲ ଫୁଲ ପଣି ଆସୁଥିବା ପବନରେ ।

ଏ ବଗିଚ୍ଚ ଚମତ୍କାର । ବେଳେବେଳେ ଭୁଲ ହୋଇଯାଏ
ଯେ ଅଙ୍କର ସତ୍ୟ ଖାଲି ଅଙ୍କପାଇଁ ସତ୍ୟ ଅଟେ । ଦିନେ
ନା ଦିନେ ମୁଁ ଦୁଇ ଏବଂ ଦୁଇ ମିଶି ଚାରି କହିବାରୁ
କ୍ଷାନ୍ତ ହେବ । ଏ ଜଘନ୍ୟ ମଧୁଶଯ୍ୟା ବନ୍ଦ ହେବ ଏବଂ
ବନ୍ଦ ହେବ ଝାଳବୁହା, ବନ୍ଦ ହେବ ସବୁ କ୍ଳାନ୍ତି, ମୋର
ଗୋରି ଦେହେ ଲଜ୍ଜାକର କ୍ଷତଚିହ୍ନ ବନ୍ଦ ହେବ ଦିନେ ଅବା ଦିନେ ।
ଆକାଶକୁ ଝଲସାଇ ଫୁଟୁଥିବ ବାଣ ଓ ଦୂରରୁ
ଶୁଭିବ ବାଜଣା ଏକ ଆସ୍ତେ ଆସ୍ତେ ପାଖେଇ ଆସିବା
ଶୋଭାଯାତ୍ରାର ଓ ବହୁ ବସ୍ତ୍ର ବସ୍ତ୍ର ଗନ୍ଧୁଣିଆଙ୍କର
ଦ୍ୱାରା ଖାନା ରନ୍ଧା ହେବ, ମାଇପି ଓ ପିଲାଙ୍କ ଭିଡ଼ରେ
ପଡ଼ିଆ ଗହଳ ହେବ, କେତେ ପିଲା ବଢ଼ାଇବେ ହାତ
ଓ ମାଗିବେ ରଙ୍ଗ ରଙ୍ଗ ବେଲୁନ୍ ଓ ଅନେକ ରଙ୍ଗରେ
ଅଙ୍କା ଇନ୍ଦ୍ରଧନୁ ଦେଖି ଆଁ କରି କେତେକ ରହିବେ
ଦିନେ ନା ଦିନେ, ହୁଏତ ଆଜିଠାରୁ ବହୁବର୍ଷ ପରେ ।
ମୋ ଦେଶର ଭବିଷ୍ୟତ ମାନେ କଲ୍ଲୁ ଅଛନ୍ତି ହାତରେ
ମୋର, ତେଣୁ ପଛେ ରଖି ଅତୀତକୁ ହୁଅ ଆଗଭର,
ଉତ୍ତିଷ୍ଠତ ଜାଗ୍ରତ ଓ ସତର୍କହୁ ମଲେ ପଛେ ମର ।

ଆଗଭର ହୁଅ ହେ ମୋ କ୍ଳାନ୍ତ ଆତ୍ମା ଆଗଭର
ହୁଅ ହେ ମୋ କ୍ଳାନ୍ତ ଆତ୍ମା ହସ ନାହିଁ କିମ୍ବା କାନ୍ଦ ନାହିଁ
ଯଥେଷ୍ଟ ସମୟ ଅଛି ହସିବା ବା କାନ୍ଦିବା ଉତ୍ତାରୁ
କିମ୍ବା ଯୁଗପତ୍ ହସ କିମ୍ବା କାନ୍ଦ ଉତ୍ତାରେ ସମୟ
ତଥାପି ରହିବ ଏବଂ ହେ ମୋ କ୍ଳାନ୍ତ ଆତ୍ମା କିଛି ବେଳ
ବଗିଚ୍ଚରେ ରହିଯାଅ ଆଗଭର ହୋଇବା ପୂର୍ବରୁ ।
ଏ ବଗିଚ୍ଚ ଚମତ୍କାର । ଆରାମରେ ବସ ଗୋଡ଼ ରଖି
ଗୋଡ଼ରେ ଓ ଶୁଣ ଏବେ ଚାରିଆଡ଼ କୋଳାହଳମୟ

ଆସୁଥିବା ଶୋଭାଯାତ୍ରା ବାଜଣାରେ । ଏବେ ଦେଖ ଦେନେ
ଶୋଭାଯାତ୍ରା ଏବଂ ତମେ ତା ସମ୍ମୁଖେ କ ସୁନ୍ଦର ବେଶେ !
ପିଲମାନେ ମାଗୁଚନ୍ତ ରଙ୍ଗ ରଙ୍ଗ ବେଲୁନ୍, କେବଳ
ତାଙ୍କ ହାତମାନ କଣ୍ଠା । ଏ ଦୃଶ୍ୟ କ ଅପୂର୍ବ ଛବିଳ !
ଆଜ ସ୍କୁଲ ଛୁଟୀ, ଆଜ ଶୋଭାଯାତ୍ରା ମାଷ୍ଟ୍ରାଣୀଙ୍କ ପାଇଁ,
ଖଇ ଓ କଉଡ଼ି ପଡ଼େ, ସବୁ କଛୁ ସରଯାଇ ନାହିଁ ।



# ନିଜକୁ ସମୁଦ୍ର ମନେକରି

ଶ୍ରୀମତୀ ବ୍ରହ୍ମୋତ୍ତୀ ମହାନ୍ତି

●

ମୁଁ ଗର୍ଜ୍ଜୁଛି ଦିବାରାତ୍ରି ମୋ ଜୀବନ ବ୍ୟର୍ଥତାର ନିଷ୍ଫଳ ଆକ୍ରୋଶେ
ତରଙ୍ଗର ବାହୁତୋଳି, ମୁଁ ଛୁଟିଛି ପ୍ରତିକ୍ଷଣେ ତୀର ଛୁଇଁ ରହିଯିବାପାଇଁ
ରହି ଅବା ପାରୁଛି କେଉଁଠି ? ପୁନର୍ବାର ଆସୁଛି ଲେଉଟି
ଅତୃପ୍ତ ମୁଁ ଆପଣାର ତରଙ୍ଗିତ ଅଶାନ୍ତ ଗର୍ଭକୁ ।

ସ୍ଥଳେ ମୋ ସ୍ଥିତି ନ ପାଇ ଉଚ୍ଛିଳି ମୁଁ ସ୍ପର୍ଶି ଆକାଶରେ
ଶାନ୍ତ ହେବ ଧର୍ମ ତା'ର ଅନୁସରି, ପ୍ରଶାନ୍ତ ତା' ପ୍ରଶସ୍ତ ବୁକୁରେ
ଆଶ୍ରୟ ପାଇବି ଟିକେ ଆକାଶ ବି ଦିଏ ନାହିଁ ଧରା
ମୁଁ ରହିଛି ଊର୍ଦ୍ଧ୍ୱେ ଚାହିଁ ଅସମାପ୍ତ ମୋ ହୃଦୟ ଜ୍ୱାଳା ।

ପୂର୍ବାଶାରେ ସୂର୍ଯ୍ୟ ଉଇଁ ପଶ୍ଚିମର ଦିଗନ୍ତରେ କ୍ରମେ ଅସ୍ତହୁଏ ।
ଜହ୍ନ ବି ଉଦୟ ହୋଇ ଅସ୍ତ ଯାଏ ସେମାନଙ୍କ କରର ଐଶ୍ୱର୍ଯ୍ୟ
ମୋ ବୁକୁରେ ସେ କି ଘଟା, କିନ୍ତୁ ହାୟ ସ୍ଥାୟିତ୍ୱ ତା' କାହିଁ ?
ଏସବୁ ଉଦୟ ଅସ୍ତ ମନେହୁଏ ମୋ ଗର୍ଭରୁ ଜାତହୋଇ ଲୀନ ହୁଏ ପୁଣି ।

ଯା' ନୁହେଁ ନିଜର ତାକୁ ଅକାରଣେ ଆପଣାର ମନେ କରିବାଟା
ଦୁଃଖର କାରଣ ସିନା, ସେମାନଙ୍କ ଯାତାୟତ ଆପଣା ଇଚ୍ଛାରେ
ଅଥଚ ନିଜକୁ ବୃଥା ଆରୋପରେ ଅକାରଣେ ଦୁଃଖର ବିସ୍ମୃତି,
ପ୍ରତିଟି ତୁଣ୍ଡରେ ପୁଣି 'ସେ ତ ତା'ର', ସେ ଉକ୍ତିର ନିର୍ବିଘ୍ନରେ ଅସମ୍ଭବ ଆସ୍ଥା

ବିଷ ଓ ଅମୃତ ବେନି ଗର୍ଭେ ମୋର, ମାତ୍ର ମୋର ଏଇ ଯେଉଁ ଉନ୍ମାଦ ଅବସ୍ଥା
ସେ ଲାଗି କେ ଦାୟୀ ? ତୀବ୍ର ଗରଳର ନିଷ୍ଠୁର ଉଚ୍ଛ୍ୱାସେ
ମୁଁ ଅଶାନ୍ତ, କ୍ଷୁବ୍ଧ ଚିତ୍ତ ଅମୃତର ସ୍ଥିତି ଥିବା ସତ୍ତ୍ୱେ ।
ପ୍ରତିକ୍ରିୟା କାହିଁ ତା'ର ? ଅମୀୟ ରହିଛି ସତ ମାତ୍ର ତା'ର ବିକାଶ ତ ନାହିଁ ।

ସେ ବିକାଶ ଅଭାବେ ଓ ଗରଳରୁ ଆତ୍ମରକ୍ଷା ବିନା
ହାହାକାରୁ ମୁକ୍ତି କି ସମ୍ଭବ ? ସବୁ କିଛି ଜାଣିବା ସତ୍ତ୍ୱେ ବି

ପରତାଣ ପାଏନ ମୁଁ, ମୋର ଏଇ ଉଦ୍ଦଣ୍ଡ ତାଣ୍ଡବେ
ଅଜସ୍ର କଣ୍ଠରେ ପୁଣି ସମର୍ଥନ କରତାଳି ବାରମ୍ବାର ଆତୁର ଆତୁର

ତାଣ୍ଡବେ ଆନନ୍ଦ ମିଳେ, ଆନନ୍ଦ ବି ଦିଆଯାଇପାରେ,
ମାତ୍ର ତାହା କେତେ କ୍ଷଣ ? ଆପଣାର ଭିତର ନିଃସ୍ୱତା
କ୍ଳାନ୍ତ ନେତ୍ରେ ଖୋଜି ଯେବେ, ଆଶ୍ରା ଟିକେ ବିଶ୍ରାମ ପାଇଁକି
କୋଟି କଣ୍ଠେ ନାନ୍ଦିବାଣୀ, ନୃତ୍ୟ କିନ୍ତୁ ବନ୍ଦ କର ନାହିଁ ।

ତୁମର କ୍ଳାନ୍ତି ଓ ଦୁଃଖ କେ କାହିଁକି ବୁଝିବ ବା କୁହ ?
ସେମାନେ ଆନନ୍ଦପାଇଁ ବିନା କ୍ଳେଶେ ନିୟତ ଉନ୍ମୁଖ ।
ତୁମ ଦୁଃଖ ଉପଲବ୍ଧି କରିବାକୁ ସେମାନଙ୍କ ସମୟ ବା କାହିଁ ?
ରତ୍ନାକର ପାପ ଲାଗି ପରିବାର ଅକାରଣେ ଦାୟୀ ।

ତେଣୁ ତୁମେ ନିଜ କ୍ଳାନ୍ତି ନିଜେ ବୁଝ ନିଜ ଦୁଃଖ ବିଶ୍ଳେଷଣ କର,
ଆପଣାର ନିଃସଙ୍ଗତା ଆପଣାର ଭିତରେ ଲୁଚାଅ,
କ୍ଳାନ୍ତି କର ପ୍ରସାରିଲେ ଧରିବ କେ, ଶୂନ୍ୟ ହାତ ଫେରିବା ହିଁ ସାର,
ଆପଣାର ଆଶୀର୍ବାଦେ ପରିବ୍ୟାପ୍ତ ଆପଣା ଉଦ୍ଧାର ।

ଅଜସ୍ର ଏ ଜ୍ଞାନ ଆହରଣ, ଉପଦେଶ ବିତରଣ ସତ୍ତ୍ୱେ
ତାଣ୍ଡବ ମୋ' ଅବ୍ୟାହତ, ତଥାପି ଏ ଆସ୍ଥା କେବେ ହରାଇ ତ ନାହିଁ ।
ଅଶାନ୍ତ ମୁଁ ଶାନ୍ତ ହେବ ଦିନେ, ଅଚଞ୍ଚଳ ମୋ ପାଣିର ତଳେ
ସେ କାହାର ପ୍ରତିବିମ୍ବ ଶତ ସୂର୍ଯ୍ୟ ଦୀପ ସମ ଜଳେ ।



# ପ୍ରଶ୍ନ

ଶ୍ରୀମତୀ ବ୍ରହ୍ମୋତ୍ତୀ ମହାନ୍ତି

●

ମୋତେ ତୁମେ ଭଲ ପାଅ, ଭଲ ପାଅ ମୋର ଏ ଦେହକୁ ?
ନୟନେ ମୋ ସ୍ୱପ୍ନଦେଖ, ଲୁବ୍‌ଧ ଆଖି ନ ଧର ଉରସେ
ବୈଦୁର୍ଯ୍ୟ ଚକ୍ଷୁର ତୃଷ୍ଣା ବମ୍ଭରଇ ଘନ କୃଷ୍ଣ ମେଘ,
ପ୍ରଣୟ ପରଖ ଚାହୁଁ ନବନୀତ ତନୁର ପରଶେ ।

ହସ ମୋର ମୁକ୍ତା ଝରେ ଅଶ୍ରୁ ତଳେ ସୁଷମା ବିନ୍ୟାସ,
ଅଧର ସ୍ୱଶାରେ ଗନ୍ଧ ଅନୁଭବ ରଜନୀଗନ୍ଧାର,
ଚରଣ ନର୍ତ୍ତନେ ତୁମେ ଅବଲୋକ ପଦ୍ମର ବିକାଶ,
ମୁଁ ମଣେ ଏସବୁ ନୁହେଁ ପ୍ରୀତି ଖାଲି ପ୍ରେମର ବିକାର ।

ହଠାତ୍ ମୁଁ ହୁଏ ଯଦି କଦାକାର, ଦୁରାରୋଗ୍ୟ ବ୍ୟାଧିର କବଳେ
ହରାଇ ରତିର ରୂପ, ଚକ୍ଷୁ ଜ୍ୟୋତି, ତନୁର ତନିମା
ଗଳିତ ଅଙ୍ଗ ମୋ ମତ୍ତ ଆଲିଙ୍ଗନେ ସତେ ଚାପିରଖି
ମଦନେ ଉନ୍ମତ୍ତ ହେବ ସ୍ୱର୍ଣ୍ଣୀ ସ୍ୱର୍ଗ ପ୍ରଣୟର ସୀମା ?

ତୁମେ ଶତ ଯୁକ୍ତି ବାଢ଼, ପ୍ରେମ ଚାହେଁ ମନ, ତନୁ ନୁହେଁ,
ସେ ସବୁ ତର୍କର କଥା, ଥରେ ତୁମ ମନକୁ ପଚାର
କାମନା ଜାଗ୍ରତ ହୁଏ, ତନୁ ଦେଖି ଅବା ହେଉ ମନ,
ରୂପାନ୍ଧେ ଉନ୍ମତ୍ତ ଚିତ୍ତ କରେ କେବେ ମନର ବିଚାର ?

ଅକସ୍ମାତ୍ ପ୍ରେମ ଯାହା ତାହା ଖାଲି ଚିତ୍ତର ବିକୃତି,
ଅଯଥା ଲୋଡ଼ୁଛ କ୍ଷମା ନାହିଁ ମୋ ପ୍ରେମେ ପ୍ରତିଶ୍ରୁତି ।

●

# ଶୀତ

ନୃସିଂହକୁମାର ରଥ

●

ସହରରେ ଶୀତଋତୁ । ଅନେକ ସ୍ମୃତିର ଭିଡ଼େ
ଗଢ ମୋ ଅଗକୁ ବଢ଼େ : କାହାର ଅବୁଝା କଥା
ସାନ ସାନ ହାତଙ୍କର ଅଜସ୍ର ଇସାରା ନେଇ
ମୁଁ ଖାଲି ଚମକି ମାପେ ସେଦିନରୁ ଆଜିର ଦୂରତ୍ୱ ।।

ନିବୁଜ ସେ ଆଣ୍ଟୁ ଘରେ ବୋଉର ପଣତ କାନିର
ମମତାର ଉତ୍ତାପରେ ମୁଁ ଛୁଁଏତ କେଡ଼େ ଜରଜର
ଗାଁ ଦାଣ୍ଡର ଧୂନିକାଠ, ରଡ଼ନିଆଁ, ଗୁହାରପାଖେ ଘେରା
ସେଦିନର ଗପ, ସନ୍ଧ୍ୟାର ଅମ୍ଳାନ ଖରା, ବାପାଙ୍କର ବାଙ୍କ୍ରିବାଡ଼ି
କଠଉର ଠକ ଠକ ଗୀତ ଏବଂ ସକାଳର ଆମଲେଟ୍ ଖରା
ସଦ୍ୟସ୍ନାତ ପଡ଼ିଆର ହସ ଯାହା, ଶୁଖିଯାଏ ହଠାତ୍ କିପରି ।
ଫସଲକଟାଲୀ ଗୀତ ଫେରିଆସେ ଉକୁଡ଼ା ଖେତର
ଶୂନ୍ୟତାରେ ଚରି ଚରି ମୋ  ଏକାନ୍ତ ସ୍ମୃତିର ସମାନ ।।

ଅସ୍ପଷ୍ଟ ଏ ଦିଗନ୍ତରେ ଶୀତଋତୁ ଅବରୋଧ କରେ
ଆସିବା ଯେମିତି ମୋର, ଅଗ୍ରଗତି, ଅସହାୟ ମୁଁ ଜମା ପାରେ ନି ।
ଅସ୍ୱୀକାର କରି ଏଇ ଏକଛତ୍ର ଶାସନ ଶୀତର
ଝୁଲି ଝୁଲି ଯାଏ ଯିଏ ବୃଦ୍ଧ ଅମଜାଦ ଅବା ସେଇ ବୁଢ଼ୀ ଧୋବଣୀ କାନ୍ଧରେ ।

ଆଉଟା ସୁନାର ପରି ସୋରିଷ ଫୁଲରେ ଖେତ ଗହଳରେ ଫୁଲିଲାବେଳେ
ମୁଁ ଦେଖିଛି ଅଦୂରରେ ପାଟଲି ପକ୍ଷୀଙ୍କ ଦେହେ କାକରର ବୋଝ
ଏବଂ ଆସ୍ତେ ଖସିବାର ସେମାନଙ୍କ କରୁଣ ମୂର୍ଚ୍ଛନା ମୁଁ ଶୁଣିଛି ବାରବାର
ତେଣୁ ମୁଁ ଭାବୁଛି କେବେ ପାରିବ କି ପୂର୍ଣ୍ଣ କରି ଯେତେ ଯେତେ
ନିଷ୍ଫଳ ମୁହୂର୍ତ୍ତ ଏ ଯାତ୍ରାର ଅବସରେ ?
ମୁଁ କ'ଣ ପାରିବ କି ରହି କ୍ଷୟ କ୍ଷତ ହିସାବ ଓ ନିକାଶ ଊର୍ଦ୍ଧ୍ୱରେ ?
ମୋ ଦମ୍ଭର ଉଦ୍‌ବେଳିତ ସମୁଦ୍ରରେ ମନେହୁଏ ମୁଁ ଯେମିତି ଏକା
ଭାସମାନ ଅସହାୟ କାଷ୍ଠଖଣ୍ଡ, ମୋ ଦେହରେ ଧୂଳି ଧୂମ ସମସ୍ତର ଛୁଇଁ

ମୋ ସ୍ୱପ୍ନର ସବୁ କିଛି ନବପଲ୍ଲବ ମଧ୍ୟେ ସେଇ ପୁଣି ଭସ୍ମ
ସେ ଯିଏ ଖୁନ୍ଦୁଛି ଏଇ ଡାଳେ ଡାଳେ
ସେମାନଙ୍କୁ ଏଡ଼ାଇ ଯତ୍ନରେ
ସେ କ'ଣ କରିଛି କିଛି ସେମାନଙ୍କ ରକ୍ଷାପାଇଁ ନିଷ୍ଠୁର ଏ ଶୀତର ପ୍ରକୋପୁଁ;
ଯିଏ ଆସି ଚରିଯାଏ ସହରର ଗଳିକନ୍ଦି ଗଛପତ୍ର ଶୂନ୍ୟ କରି କରି !
ଏଇ ବ୍ୟସ୍ତ ଗହଳିର ଆତ୍ମାହୀନ ଭୂତଙ୍କ ଗହଣେ
ମୁଁ ତାକୁ ପାଉଛି ଚିହ୍ନି ଯିଏ ଅତି ଅଳିଅଳି, ସବୁ ମୁହେଁ କାଳି ବୋଳି
ସୁନାପିଲା, କିନ୍ତୁ ନ ଜାଣିଲା ପରି ନିଶ୍ଚିନ୍ତରେ ନିର୍ବିକାରେ ରହେ ॥

ମୋ ପିଠି ଥାପୁଡ଼ି ଯାଏ ସ୍ନେହପୂର୍ଣ୍ଣ ଆଶ୍ଚର୍ଯ୍ୟ ହସରେ
ଏବଂ ମୁଁ ଆଗକୁ ଗଲେ, କ୍ରମଶଃ ଦୂରତ୍ୱ ବଢ଼େ ମୋ କୁନିଠୁଁ
ସେ ଯିଏ ଗୁରୁଣ୍ଡା ଗୁଡ଼ି ଆସ୍ତେ ପୁଣି ପାଦ ତା'ର ଆଗକୁ ବଢ଼ାଏ,
ଫୁଲ୍‌ଝରି ମୁହେଁ ତା'ର (ଫାଙ୍କିବାକୁ ବାଟନ ହିଁ) ସମସ୍ତର କରତାଳି
ଲୁଚକାଳି ଖେଳ ଏବଂ ହୁକୁମ୍ପି, ଗଲି ଗଲି କାଳିଆ ବଳଦ ।



# ପ୍ରଜାପତି

ନୃସିଂହକୁମାର ରଥ



ସେଇ ସେଉଁ ପ୍ରଜାପତି ବହୁବର୍ଣ୍ଣେ ଚିତ୍ରିତ ଡେଣାକୁ
ଶାଗୁଆ ଘାସରେ ଘଷି ଗଛୁଁ ଗଛେ ଉଡ଼ି ଉଡ଼ି ଯାଏ
ସକାଳ କଅଁଳ ଖରା ଥରଥର ପବନ ଦୋଳାରେ
ଯେବେ ସିଏ ଖେଳ ଖେଳେ କେତେ ମୁଗ୍ଧ ଗ୍ଧଇ ହୋଇଯାଏ ।

ସେଦିନ ପଢ଼ୁଛି ମନେ (ପ୍ରଜାପତି ଉଡ଼ିଗଲା ବେଳେ)
ନିହାତି ନିଜର ଭାବ ଏ ଘରର ଝର୍କା ଦେଇ ଆସି
ସେ କେମିତି ଧରାଦେଲା ଅମାୟିକ ସ୍ନାନ ପିଲାପଣ
ମସୃଣ ରେଶମୀ ଦେହେ ମୁହୂର୍ତ୍ତିକେ ଧରିଲା ଆଶ୍ଳେଷି ।

ତା'ପରେ କହିଲା ଧୀରେ (ମୁହଁ ତା'ର ନଇଁ ଆସିଥିଲା)
ସତେ ଅବା ଜଳିଗଲା ସରମରେ ଚପଳା କିଶୋରୀ
ଫଳତ ଅନେକ ବ୍ୟଥା କେତେ ବର୍ଷ କେତେ ଯେ ଯୁଗର
ଅବସନ୍ନ ଡେଣା ତା'ର ଥରୁଥିଲା ଦୁଃଖ ଓ ଭୟରେ ।

ସେ ମୁହୂର୍ତ୍ତି ବନମଧ୍ୟେ ଆଦିଗନ୍ତ ପାଇଲା ସେ ପରମ ଆଶ୍ରୟ
ମୁହୂର୍ତ୍ତିର ବନମଧ୍ୟେ ଆଦିଅନ୍ତ ବ୍ୟାପ୍ତ ଚରାଚର
ତା ଦୃଷ୍ଟିରେ ସ୍ପଷ୍ଟ ହେଲା ଲୁପ୍ତ ସ୍ୱପ୍ନ ବହୁରୂପ କଳ୍ପ
ସେ ସବୁକୁ ଅନୁସରି ମୁକ୍ତକରି ବନ୍ଧନର ସୂତ୍ର
ଉଡ଼ି ଉଡ଼ି ବୁଲେ ସେ କି ମୋ ଦୃଷ୍ଟି ସୀମାନ୍ତେ
ଏଇ ନୀଳାକାଶେ ସଂଗୀତ ଲହରେ ।



# ଗୋଲକ ଧନ୍ଦା

କମଳାକାନ୍ତ ଲେଙ୍କା

●

( ୧ )

ଭଲ କର ଜାଣେ ମଣିଷ
ଭଲ ପାଏ କାହିଁକ ପାପକୁ,
କାହିଁକ ସବୁ ରଂଗନଡ଼ା, କାଉଛଡ଼ା, ଘର୍ମାକ୍ତ ଗଂଧଉଡ଼ା
ପୁରୁଣା, ମଇଳିଆ ଘନର
ବେକଭଂଗା ସ୍ୱପ୍ନବା ଠାଣିକୁ, ଭଲକର ଜାଣେ
ମଣିଷ ତା ଭିତରଘର ଠାକୁର
ସ୍ୱପ୍ନଥାଏ କେମିତ ତା' କ୍ଷୟ କ୍ଷତର, ଲାଭ ଲୋକସାନର
ଶରତ କ୍ଷେତକୁ, ବଗିଚାରେ ଫୁଟି ଆସୁଥିବା
ଫୁଲଟିର ନର୍ମେଦ କଢ଼କୁ । ମଣିଷ
ଜାଣେ ଭଲକଣ କାହିଁକ
ସେ ଭଲପାଏ ତା' ଦୁଃଖର ଉଜାଣି ତରୀକୁ
ତା କୁଟାକାଠିର ସଂସାର
ଅଂଧ ପାଗଳାମିର ଉଲ୍ଲାସ
ତା' ପୌରୁଷର ସ୍ରୋତ ପବନରେ ପଡ଼ୁଥିବା ବେଳେ,
ଭଲକର ଜାଣେ କବ
କାହିଁକ ଓ କେଉଁମିତ ଛଟପଟ
ଈଶ୍ୱରଂକ ଯାବତୀୟ ସୁଂଦର ସୃଷ୍ଟିର
ଆକର୍ଷଣ, ରହସ୍ୟ କବଲେ !

( ୨ )

ମୁଁ ନିଶ୍ଚିତ ସେ ଦନ ଡ଼ାକ
କହିଲ ସ୍ତ୍ରୀକୁ ସେ : ଆଜକାଲ
ତମକୁ ଦେଖିଲେ କ୍ରୋଧ ଚଢ଼େ ମଗଜକୁ
ଓ ତମ ଟ୍ରେସ୍‌ପ୍ ମୁହଁର ଆକାଶ
ଲଦ ପଡ଼େ ଆବେଗରେ, କବତାରେ, ସାଂସାରକ
ବୋଝର ମଥାରେ; କଂଉ ତମେ ଜାଣିରଖ
ଧାଡ଼ିଟିଏ ଆସେ ନାହିଁ, ପଦୁଟିଏ ପଇଟେ ନ
ମନକୁ ବା କଲମକୁ;
ଟିକେ ଶ୍ଳଥ ବେଶଭୂଷା ପାଖାପାଖି, ଲଗାଲଗି

ଲୋଟଣି ନ ଦେଲେ, ବା ଭୂମି ଅଂତର୍ଧାନ
ନିଃଶ୍ୱାସର ଘୋଡ଼ା ଚଢ଼ି ଫାଂକା ଏକ ପଡ଼ିଆର
ନିର୍ଜନତା ସଂଖୁଳି ନ ନେଲେ ! ସେ କହିଲେ;
ଉର୍ଦ୍ଧ୍ୱଗମି, ମସ୍ତ୍ରଗମ ମାତାଲ କଥାକୁ
ବା ବିଶ୍ୱାସ କାହାର ? ମାତାଲ ନ ହେଲେ
କେଇ ଇତସ୍ତତଃ, ବିଶୃଂଖଳ, ବିଶୁଦ୍ଧ ପ୍ରେମରେ
ରସାଳ କାବ୍ୟରେ ହଜେ ନାହିଁ—
ଚଇତନ୍ୟ ବୁଢ଼ା ବୟସରେ,
ଅଥବା ବିପନ୍ନ ମୁହେଁ ଫୁଟେ ନା ରଜନୀଗଂଧା,
କାମିନୀ ଓ ଅଗଣାର ତଗ୍ରଟ ଟଗର ॥

( ୩ )

ମୁଁ କ'ଣ ଭାବିଥାଂତି ସ୍ତ୍ରୀଙ୍କୁ ଯେ :
ନ ଥିବାରୁ ଗୋଟେ ହେଲେ ତଗ୍ରଟ
ଅଗଣାର ନୃଶଂସ ଖରାରେ, ବିରକ୍ତ ଓ ନିସ୍ତୁଟିଆ
ମୁହୂର୍ତ୍ତ ଗୁଡ଼ାକ ଆପେ ଆପେ ଠେଲି ଦେଲେ
ବସ୍ତୁ ବସ୍ତୁ କଠୋର ଶବ୍ଦଙ୍କୁ ଓ ପର ମୁହୂର୍ତ୍ତରେ
ଟିକ୍ ଟିକ୍ ହଳଦିଆ ଖରାର ବିଖରା
ପୁରିଗଲା ଆଲୁଅରେ, ଶୁଦ୍ଧ ବିବେକରେ
ଈଶ୍ୱରଙ୍କ ବିଂଧାଣିପଣିଆ
ନିଃଶବ୍ଦ ହେଲାବେଳେ
ମାଇପିଙ୍କ ଫିସ୍ ଫାସ୍ ଗୃହିଣୀର
ଶୂନ୍ୟ ଆକାଶରେ । ଏତେବେଳେ
ରାତି ପାହେ । କୁଆ ଓ କୋଇଲି
ଭାଂଗିଦିଏ ମଗ୍ନତା ଓ  ଭରପୂର ଭଣ୍ଡାରର
ଜଗୁଆଳି ଫେରିଆସେ ପୁନର୍ବାର
ନୃଶଂସ ସତ୍ୟର ବିଚ୍ ବଜାରକୁ । ସେଠାଂରୁ
ଚୁପ୍‌ଚାପ୍, ଶୁଆପରି ଘୋଷୁଥାଏ
କ୍ଷଣ କ୍ଷଣ୍ ସମୟର ବ୍ୟଗ୍ରତା ଓ ଆସନ୍ନ ସଂକଟରେ
ଭକୁଆ ଦୃଷ୍ଟିରେ ପୋଛେ ବୈରାଗ୍ୟର ଝାଳ
ଭଲ କରି ଜାଣେ କାହିଁକି
ଉଲଗ୍ନ ହୁଏ ପୁରୁଷ
ଦେଖି ଦେଲେ ରୂପବତୀ ନାରୀର କଂକାଳ ।

(ଯା'ର ଅନ୍ୟ ନାମ ହୁଏତ ମୃତ୍ୟୁ ଏବଂ ଏ ମୃତ୍ୟୁକୁ ଭଲ ପାଏ
ମଣିଷର ସବୁ ପ୍ରେମ, ସବୁ ସ୍ନେହ, ସବୁ ସତ୍ତ୍ୱ-ତତ୍ତ୍ୱର ଆସର)

( ୪ )

ଆସର ଭାଂଗେ ନାହିଁ ସହଜରେ ।
ସରେ ନାହିଁ ଆସରର ନାନାବାଦ୍ୟ
ଗୀତର ସିଂଫୋନି, ସରେ ନା ବ
ସହଜରେ ଫୁଲତୋଳା, (କାରଣ ଫୁଲ ଫୁଟେ,
ଫୁଲ ଝଡ଼େ, ପୁଣି ଫୁଟେ, ଫୁଟିବାହିଁ ଧର୍ମ ଏ
ଫୁଲର) ଯାହା ଖାଲି ବଗିଚ୍ଚର ନିସ୍ତବ୍ଧ ଗଛକୁ
ବନ୍ଧେ ବନ୍ଧେ କାଲୁବାଲୁ କରିବାହିଁ ସାର ।
ଯାହା ଖାଲି ଥଳକୂଳଶୂନ ହ୍ରଦ
ମଝି ଚଉଁରରେ ଠିଆ ହେଇ
ପଦ୍ମତୋଳା ବୋଲିବା ଓ କ୍ଷତର ଚନ୍ଦ୍ରକୁ
ପୁନର୍ବାର ନାଗୁଣୀର ମୁହେଁ ଯୋଖିଦବା ।
ଆସର ଭାଂଗେ ନାହିଁ ସହଜରେ
ପୁଅ ରକ୍ତେ ସଢ଼ିଗଲେ ସମସ୍ତ ବଜାର;
ବଂଶୀ ଚରିତ ଜାଣେ ଧସାମାଟି, ଶୂନ୍ ଚଢ଼େଇ,
ଓ ଟୁନ୍ ଟୁନ୍ କଳସୀର
ନିଶବ୍ଦ ବେଖର ॥

( ୫ )

ବେଶ୍, ଠିକ୍ ଅଛୁ । ଏତେ ରସ
ଏତେ ଭାଷ୍ୟ, ଏତେ ନିଘପତ୍ର ଲୋଡ଼ା ନାହିଁ ।
ଲୋଡ଼ା କ'ଣ ? ଖାଲି ଶୂନ୍, ୦ ୦
ଲୋଡ଼ା ମୋର, ତୁମର, ସଭିଂକର । ଆତୁର ସଂଜରେ
କିଏ ଜାଣେ ? ସଭିଏଁ ତ୍ରସ୍ତ ଶାଗୁଆର
ନିର୍ଲୋଭ ହିଂସାରେ ନିମଜ୍ଜିତ, ନିଶାଖୋର
ଆଲୁଅରେ, କିଏ ବା ଅଂଧାରେ ।
କାହା କାଂଧ ଭାଂଗିଯାଏ ପର୍ବ୍ବ ମତ୍ତ, ଅଢଥ ସଳ୍ପାରେ ॥
କାହାର ବା ଖାଲି ଶୂନ, ୦ ୦
ଦୃଶ୍ୟ ଏବଂ ଅଦୃଶ୍ୟର ଗୋଲକ ଧନ୍ଦାରେ ॥



# ବନ୍ଦମଞ୍ଚ

ବ୍ରଜନାଥ ରଥ



'ଅଶ୍ରୁ'ର ବନ୍ଦମଞ୍ଚେ
କିଣିଲି ମୁଁ ଏକ ଫୁଲ
ମମତାର ଏକ ଫୁଲ
ସେହି ଫୁଲଟିକୁ ଫୁଟାଇ ଦେଲି ମୁଁ
ପ୍ରତିଟି ମରମ ତଳେ
ଜାଣେ ନାହିଁ ମୁହିଁ କେହି କେବେ ବଦନେ
ଦେବେ କି ନାହିଁ ତା' ମୂଲ ।

'ରକ୍ତ'ର ବନ୍ଦମଞ୍ଚେ
କିଣିଲି ମୁଁ ଏକ ପକ୍ଷୀ
ଶାନ୍ତିର ଏକ ପକ୍ଷୀ
ସେହି ପକ୍ଷୀଟିକୁ ଉଡ଼ାଇ ଦେଲି ମୁଁ
ବିଶ୍ୱର ମହାକାଶେ
ଜାଣେ ନାହିଁ ସେ କି ନୂତନ ଆଶାର
ବରଷା ଆଣିବ ତାକ ।

'ସ୍ୱପ୍ନ'ର ବନ୍ଦମଞ୍ଚେ
ତୋଳିଲି ମୁଁ ଏକ ତାରା
ଆକାଶର ଏକ ତାରା
ସେହି ତାରକାକୁ ଜଳାଇ ଦେଲି ମୁଁ
ମାଟି ପ୍ରଦୀପରେ ମୋର
ଜାଣେ ନାହିଁ ସେ କି ପ୍ରତିଟି ମରମେ
ଢାଳିବ ଆଲୋକ ଧାରା ।

ହୃଦୟ'ର ବନମଧ୍ୟେ
ଆଣିଲି ମୁଁ ଏକ ନାରୀ
ଅପରୂପା ଏକ ନାରୀ
ସେହି ନାରୀଟିରେ ଅର୍ଘ୍ୟ ଦେଲି ମୁଁ
ଜୀବନର ସବୁ କିଛି
ଜାଣେ ନାହିଁ ସେ କି ଅନ୍ତର ମୋର
ବୁଝିଅଛି ଭଲ କରି ।

ଅଶ୍ରୁ ଦେଇ ମୁଁ
କିଣିଲି ତ ଯେଉଁ ଫୁଲ
ରକ୍ତର ବନମଧ୍ୟେ ମୁଁ ଆଣିଲି
ଆକାଶର ଯେଉଁ ପକ୍ଷୀ ;
ସ୍ୱପ୍ନ ଦେଇ ମୁଁ
ତୋଳିଲି ତ ଯେଉଁ ତାରା ।

ହୃଦୟ ଦେଇ ମୁଁ
ଯେଉଁ ଅପରୂପା ନାରୀରେ ଆଣିଲି ଡାକି;
ସେମାନେ କି ମୋର ମାଟି-କୁଟୀରକୁ
ସ୍ୱର୍ଗ କରିବେ ସତେ
ବିଶ୍ୱକୁ ମୋର କୁଟୀର କରିବେ ଅବା ;
ସକଳ ଦେଇ ମୁଁ ସବୁ ପାଇବାର
ଭରସା ରଖିଛି ମନେ
ଆଶା-ଆଲୋକରେ ପହଁରି ପହଁରି
ଜୀବନ-ଗୀତରେ ଶିହରି ଶିହରି
କାଟୁଛି ରାତ୍ରି-ଦିବା ॥



# ଫୁଟିବାର ଆଶା ନେଇ

ବ୍ରଜନାଥ ରଥ



ହାତ ବଢ଼ାଇଲେ
ଆକାଶ ;
କିନ୍ତୁ
ପାଦ ବଢ଼ାଇଲେ
ପାତାଳ ।
ହାତ ବଢ଼ାଇଲେ
ସ୍ୱର୍ଗ ;
କିନ୍ତୁ
ପାଦ ବଢ଼ାଇଲେ
ନରକ ।
ତେଣୁ
ମୋ ଆଗରେ
ଏକ ପ୍ରଶ୍ନ
ଏକ ଜଟିଳ ପ୍ରଶ୍ନ
ଉଡ଼ିବ ନା ବୁଡ଼ିବ ;
ଫୁଟିବ ନା ଲୋଟିବ ??

ଦିନେ
ଆକାଶର
ନିଃସୀମ-ନୀଳିମାରେ
ଉଡ଼ିବାକୁ ଯାଇ
ମୁଁ
ପାତାଳର
ଅତଳ—ଅନ୍ଧକାର
ଭିତରେ
ବୁଡ଼ି ଯାଇଥିଲି ।

ଦିନେ
ସ୍ୱର୍ଗର
ପାରିଜାତ ବନରେ
ଫୁଟିବାକୁ ଯାଇ
ନରକର
ପଙ୍କିଳ ପଥରେ
ଲୋଟି ଯାଇଥିଲି ।

ଆଜି କିନ୍ତୁ
ଉଡ଼ିବାର ଆଶା ନେଇ
ମୁଁ
ବୁଡ଼ିବାକୁ ଚାହେଁ,
ଫୁଟିବାର ଆଶା ନେଇ
ମୁଁ
ଲୋଟିବାକୁ ଚାହେଁ ॥



# ଦର୍ପଣ

ଜଗନ୍ନାଥ ପ୍ରସାଦ ଦାସ



କେବେ କେବେ ସୂର୍ଯ୍ୟ ଆସି ଛୁଏଁ ମତେ
ଅଧା ଖୋଲା ଝରକାକୁ ଡେଇଁ, ମୋର ଅର୍ଦ୍ଧ—
ଚେତନାର ଶେଷ ପ୍ରହରରେ, ସ୍ୱପ୍ନ ସବୁ
ବିବ୍ରତ ହୁଅନ୍ତି, ଆଖି ଖୋଲି ଦେଖେ ମତେ
ଜଣାନାହିଁ କାହାର ପଲଙ୍କ, ଶୋଇଛି ମୁଁ
କେଉଁଠି କିପରି, ମୋ ପାଖରେ ସେ ନାରୀ
ଅପରିଚିତା, ସେ କୋଠରୀ ଅଜ୍ଞାତ କୋଠରୀ ।

ଖୋଲିଦିଏ ମୋ ଗଳାରୁ ଦୁଇ ନଗ୍ନ ବାହୁର ଶିକୁଳି
ତା' ଦେହର ପୁଞ୍ଜିଭୂତ ଉତ୍ତାପର ଘେରରୁ ମୁଁ
ଚାଲିଆସେ, ମୁଁ ତାକୁ ଚିହ୍ନିବାପାଇଁ ଚେଷ୍ଟା କରେ
ସେ କି ମୋର ଜୀବନ ସଙ୍ଗିନୀ, ଅଥବା ସେ,
ଅକସ୍ମାତ ବନ୍ଧୁ ମୋର ସେଦିନ ସନ୍ଧ୍ୟାର
ମୁଁ ତା'ର ଦେହର ବାର୍ତ୍ତା ପଢ଼ିବାକୁ ଖୋଜେ
ସେ କି ଖାଲି ମାଂସ ଆଉ କାମନାର ।

ଅବା ମୋର ରୋଗଗ୍ରସ୍ତ ମନର ବିକାର !
ଦୁଆର ଖୋଲି ମୁଁ ଆସେ ବାହାରକୁ
ମୋ ଆଗରେ ଦେଖେ; ଅନେକ ଅପରିଚିତ ରାସ୍ତାର
ଗୋଲକଧନ୍ଦା, ସକାଳର ସୂର୍ଯ୍ୟସ୍ନାତ ଅଚିହ୍ନା ସହର
ପରିଚୟହୀନତାର ଏ ସହର ରାସ୍ତାରେ ରାସ୍ତାରେ
ଅର୍ଥହୀନ କୋଳାହଳ, ବଜାରରେ ଭିଡ଼
ଅନେକ ଲୋକଙ୍କ ମେଳ ଖୋଲିଯାଏ ଅନେକ ଝରକା
ସେମାନଙ୍କ କଥା କିନ୍ତୁ ଅତୀବ ଦୁର୍ବୋଧ
ସେମାନେ ଅପରିଚିତ ସେମାନଙ୍କ ମୁହଁ ସବୁ ମୁଖା
ଏଇ ଏକମୁଖା ମୁହଁ ନାଟକର ମନେହୁଏ
ମୁଁ ଏକା ଦର୍ଶକ; ସେ ସବୁ କି ଅଭିନୟ ?

ନାଟକର ଶେଷ ଅଙ୍କ ପରେ ସେ ଏକନୁଷ୍ଠ ହେବା
ସବୁ କଳାକାରଙ୍କର, ବିଦାୟ-ସୂଚକ ?
ମୁଁ ଆସେ ମୋ କୋଠରୀର ଆଶ୍ରୟକୁ
ଦର୍ପଣରେ ନିଜକୁ ଅନାଏ, ସେ ମୁହଁ ବି ମୁଖା
ସ୍ଥିର ନିଃଶ୍ୱାସ ନେଇ ଝରକା ବାହାରେ ଦେଖେ
ଅନେକ ଲୋକଙ୍କ ଭିଡ଼ କୋଲାହଳ ଅନେକ ଦର୍ଶକ
ପଲଙ୍କ ଓ ଶିକୁଳିର ନିରାପଦ ଆଶ୍ରୟରୁ
ଆବିଷ୍କାର କରେ ଏଥରକ
ସେମାନଙ୍କ କଥାସବୁ ମୋ କଥାର ପ୍ରତିଧ୍ୱନି
ଆମେମାନେ ସବୁ ଏକା ଲୋକ ।



# ଅନ୍ୟସବୁ ମୃତ୍ୟୁ

ଜଗନ୍ନାଥ ପ୍ରସାଦ ଦାସ

●

ପ୍ରଥମେ ଭୁଲିବି ତୁମ ଆଖିକୁ ଓ ତା' ପରେ ତୁମକୁ
ତୁମର ମୁହଁ ଓ ସତ୍ତା ଯାହା ମୋର ନିଜସ୍ୱ କ୍ଷଣକୁ
ଶୂନ୍ୟ ଭଳି ଜଡ଼ି ଧରେ ବନ୍ଦ କରେ ଶବାଧାର ଭଳି
ସବୁ ମୁଁ ଭୁଲିବି ଆଜି ସୁନିଶ୍ଚିତ ନିମାନ୍ଦ୍ୟସ୍ଥ କରି
ମୋର ସବୁ ଅନୁଭୂତି ଜନ୍ମ ନେଇ ତୁମ ଦି' ହାତରେ
କିଛି ତାକୁ ଖେଳି ସାରି ରଖିଦିଅ ତୁମରି ଗୁଚ୍ଛରେ
ତେଣୁ ମୁଁ ଭୁଲିବି ତୁମ ହାତକୁ ଓ ଗୁଚ୍ଛକୁ ଓ ତା' ପରେ ତୁମକୁ
ତୁମ ଆଖି ତାରା ହୋଇ ତୁମେ ନିଜେ ସ୍ମୃତି ହୋଇ କେବେ
ମନେ ରଖିବାକୁ ମତେ ଏଇପରି ବାଧ୍ୟ କର ଯଦି
ସବୁ ମୁଁ ଭୁଲିବି ମୋର ମୃତ୍ୟୁ ଅବା ଅନ୍ୟ ଭଳି ପାଇବା ଅବଧି

ଏପରି ଅଦ୍ଭୁତ ଦିନ ସବୁ କିଛି ମାୟା ଏବଂ ଇନ୍ଦ୍ରଜାଲ ଭଳି
ଦିନର ଆକାଶ ମତେ ମେଘାଚ୍ଛନ୍ନ କରି ରଖେ ବନ୍ଧୁ ରୂପ ଧରି

ମନ୍ଦିର ଉପରେ ହୋଇ ପତାକା ଓ ଶାଢ଼ୀ ହୋଇ ଅନେକ ଗୁଚ୍ଛରେ
ଝରକାରେ ଫଟୋ ହୋଇ ପଂକ୍ତି ହୋଇ କବିତାର ବିଜୁଳି ତାରରେ
ଦିନରେ ଅନେକ ରୂପ ନେଇଥାଏ ସ୍ମୃତିରେ ବି ଆହୁରି ଅନେକ
କେବଳ ଆକାଶ ଯଦି କିପରି ମୁଁ ସହିବି ଏ ତାରା ଓ ମେଘକୁ
ହେ ଈଶ୍ୱର ମତେ କିଛି ଶକ୍ତି ଦିଅ ଏମାନଙ୍କୁ ସମର୍ଥ ହେବାକୁ

ତା'ଠାରୁ ଅଧିକ ଭଲ ରହିଥିବି ନିଜକୁ ମୁଁ ନେଇ
ପ୍ରଜ୍ୱଳିତ ମଧ୍ୟାହ୍ନର ଅଗ୍ନିଗର୍ଭ ଏକ ଅର୍ଦ୍ଧାଂଶରେ
ଅନ୍ୟ ଅର୍ଦ୍ଧାଂଶରେ ପଛେ ରହିଥାଉ ସନ୍ଧ୍ୟା ସବୁ କମଳା ରଙ୍ଗର
ରହିଥାଅ ତୁମେ ଏବଂ ଯେତେ ଅନ୍ୟ ସ୍ୱପ୍ନର ପୃଥିବୀ
ମତେ ପଛେ ଖୋଜୁଥାଅ ଯଦିଓ ମୁଁ ସେଠାରେ ନ ଥିବି

କିମ୍ବା ଆସି ଖୁଲିଯିବା ପ୍ରବେଶ ଓ ପ୍ରସ୍ଥାନର ଏକକ ରାସ୍ତାରେ
ଉତ୍ତରାଧିକାର ଦାବି ନ କରି ଓ ରାଜତ୍ୱ ଓ ସିଂହାସନ ଜଳାଞ୍ଜଳି ଦେଇ
ଏଠାରେ କେବଳ ଆତ୍ମ କ୍ଷୟ ହୁଏ ବ୍ୟକ୍ତିଗତ ପରିହାଣି ଖୋଜି
ଏଠାରେ କବିତା ସବୁ ମୃତ ଶବ୍ଦମାନଙ୍କର ଅସଂଗତ ଯୋଗ
ମୁକ୍ତି ଏବଂ ସାର୍ଥକତା ସଂଧାନରେ ନିଜତ୍ୱ ବି ଯଦି ଥାଏ ହଜି
ସଂଶୟ ରହିଛି ଯଦି ସବୁଠାରେ ପ୍ରଶ୍ନ ତମେ କରିବ କାହାକୁ
ଏକମାତ୍ର ପରିଣତି ମୂଲ୍ୟହୀନ କରିଦିଏ ମୁହୂର୍ତ୍ତିକେ କାରଣମାନଙ୍କୁ

ଆମର ସଂଧାନ କରି ମୃତ୍ୟୁ ଦିନେ ଆସିବ ଏପରି
ସାକ୍ଷ୍ୟ ଓ ପ୍ରମାଣ ନେଇ ଆମେସବୁ ବିସ୍ମୃତ ହେବାର
ଆମେ ଠିଆ ହେବା ତା'ର ଚତ୍ୱରରେ ଭୟଙ୍କର ମୁହୂର୍ତ୍ତକୁ ଗଣି
ଆମର ସମସ୍ତ ଶୋକ ଅସଂପୂର୍ଣ୍ଣ ଥିବ ଶେଷ ପ୍ରହର ପର୍ଯ୍ୟନ୍ତ

ସେଠାରେ ନଥିବ ଆଖି ଦେହ ହାତ ଆକାଶ ବା ମେଘ
ଅନେକ ଆକାର ସବୁ ସମୟର ଆଘାତରେ ବିପର୍ଯ୍ୟସ୍ତ ହୋଇ
ସେଠାରେ ସମସ୍ତ ଶ୍ୱେତ ବିବର୍ଣ୍ଣ ଓ ଅନିର୍ଦ୍ଦିଷ୍ଟ ଥିବ

ଏଭଳି ମୁହୂର୍ତ୍ତ ସବୁ ତମପାଇଁ ଶୁଭଙ୍କର ହେଉ
ତମେ ଫୁଟ ଫୁଲ ହୋଇ ନୂତନ ଋତୁରେ ।



# ରାକା

ବିବେକାନନ୍ଦ ଜେନା



— ୧ —

ଏଠି ଖୋଲା ଅଗଣା ତୁମର
ଚନ୍ଦ୍ରଲୋକ ଯାଏ ।

ଏଠି ତୁମ ଦୀର୍ଘଶ୍ୱାସ ଦୂର ତାଳବନେ
ବତାସ ଓ ଚଢ଼େଇଙ୍କ ବସା ଦୋହଲାଏ
ସାହି ସାରା ଦୁଆର କବାଟ ଯେବେ ପଡ଼ିଯାଏ ।

ଏଠି ତୁମେ ଝରା-କନଅର ମଶିଣାରେ
ଚଉତରା ଅଗଣା ଓ ଗଛ ଛାଇ ତଳେ
ଶୋଇ ରହ ମଉଳା ଜହ୍ନରେ ।

କେତେ ବନ-ଝରକାର ପଛଆଡ଼େ
ତୁମ ନାମେ ଚୁପ୍ ଚୁପ୍ କଥାବାର୍ତ୍ତା ହୁଏ ।
ଏଠି ତୁମେ ଫେରଆସି ପୁଣି ଥରେ
ଚଉତରା ଅଗଣା ଓ ଗଛର ଛାଇରେ
କାନ୍ଦଣା ନିଃଶବ୍ଦ କର ଅନ୍ଧାରରେ ।
ଅଗଣାଟା ସାରା ପୁଣି ମାଡ଼ି ମାଡ଼ି ପଡ଼େ ।

ଏ ଛୋଟା ଛାଇର ପାହାଚ
ରାତି ଶେଷ ଯାଏ ।

— ୨ —

ତୁମେ କେତେବେଳେ ଆସି ନିର୍ଝରରେ
ଦେହ ଧୁଅ ଅଗ୍ନାଅଗ୍ନି ବନସ୍ତ ଭିତରେ ।
ନିଃଶବ୍ଦରେ ।
ତୁମ ଦେହରୁ ପରିଫଳିତ ଚନ୍ଦ୍ରାଲୋକ
ଅଧିତ୍ୟକା ସାରା ଯେତେ କ୍ଷତ ଭୁଚସର

ସବୁ ଶୀତଳ ଶିଶିରେ ଧୋଇଦିଏ
ମଧ୍ୟରାତ୍ରି ବେଳେ ।
ଦୁକୂଳ ତୁମର ଆକାଶରେ ଉଡ଼ିଯାଏ
ଏବଂ ତୁମେ ସନ୍ତର୍ପଣେ ଫେରିଯାଅ
ଯେବେ ଜନପଦ ସବୁ ନିଦ୍ରିତ ତୁମର
ଆକାଶରେ ଝୁଲୁଥିବା ଦୁକୂଳର ତଳେ ।
କେବେ ପୁଣି ତୁମ କାନ୍ଦ ଶୁଭୁଥାଏ ପଥେ
ଅବା କେଉଁ ଅପ୍ରଦୀପ୍ତ ଅନ୍ଧାରରେ
ଘନ ଘୋର ବନସ୍ତ ଭିତରେ ।

—୩—

ତୁମେ ଶୋଇ ରହ ଚୁପି ଚୁପି ଚନ୍ଦ୍ରାଲୋକେ
ନଈଧାରେ ଅଶ୍ୱତ୍ଥ ଛାଇରେ ।
ତୁମେ ପୁଣି ବିଚଳିତା ବନ୍ଧୁ ଆକାଙ୍‌କ୍ଷାରେ
ଆଉ ତୁମ ନୀଳ ନେତ୍ର, ଚନ୍ଦ୍ରାଲୋକର ପଣତ
କିଏ କାଳି ଦେଇଛି ଏ ଅଶ୍ୱତ୍ଥ ଦେହରେ
ତୁମେ ସେଇ ଝାପ୍‌ସା ଛାଇରେ ଦେହ ଲୁଚାଅ ।
ପବନକୁ ଦୋହଲାଅ ଅଶ୍ୱତ୍ଥ ଶାଖାରେ ।
କାହା ସ୍ୱର ତୁମେ ପୁଣି ଶୁଣ
ଚନ୍ଦ୍ରସିକ୍ତ ପବନର ମର୍ମନ୍ତୁଦ ସ୍ୱର ବିନ୍ୟାସରେ
କୁହୁଡ଼ି ଘେରିଲାବେଳେ ଦୂର ପାଠ ଧାରେ ।
ଅବିନ୍ୟସ୍ତ ପୁଣି ତୁମେ ବସି ରହ,
ଯାଆଁଳା ଅଶ୍ୱତ୍ଥ ଗଛ ମନ୍ଥର ଛାଇରେ ।

—୪—

ଦୂର ଗିରିଶୃଙ୍ଗେ ତୁମ ଦେହ ଛାୟା ।
ତାରଶୂନ୍ୟ ଆକାଶ ଉଜ୍ଜ୍ୱଳ ।
ଏବଂ ସାରା ଭୂଚକ୍ରର ସବୁ କୋଣ
ନିଶ୍ଚଳ କେବଳ ତୁମ ମୁକ୍ତ କେଶ ଛଡ଼ା
ସବୁଠାରେ ଚନ୍ଦ୍ରାଲୋକ ହଜିଯାଏ
ନିଷ୍ପନ୍ଦ ଛାଇର କେତେ ବଣେ,

ଦଣେ ଖାଲି ପର୍ବତ ଶିଖରେ
ଉଦ୍ଭାସିତ କରିବାକୁ ତୁମ ନଗ୍ନ ଗ୍ରୀବା ।
କ୍ଷଣ ପରେ ବନସ୍ତ ନସ୍ତବ୍ଧ ହୁଏ
ଚନ୍ଦ୍ରାଲୋକ ଶୁଖିଲା ପତ୍ରକୁ ପୋଡିବାକୁ ଆସେ
ଯେବେ ନମସ୍କୃତ ହୁଏ ତୁମ ଦୀର୍ଘଶ୍ୱାସେ
ତୁମ ପାଦତଳେ ପତ୍ର ଦଳାହେବା ବେଳର କାନ୍ଦଣା ।

—*—

ତୁମେ କାହା କଥା ଭାବ ।
କାହାପାଇଁ ତୁମ ଦୁଃଖ ଅନେକ ରାତରେ
ଦୀର୍ଘାଙ୍ଗ ବୃକ୍ଷଙ୍କ ଶୀର୍ଷେ ଲମ୍ବମାନ ହୁଏ ।
ପବନ ବାହୁନେ ଆଉ ଚାଲିଯାଏ ।
ପୁଣି ଦଣେ ପବନର ଦୁଃଖ—
ଭରା ଧାନକ୍ଷେତର ଉପରେ ଚନ୍ଦ୍ରାଲୋକେ ।
ଧାନକ୍ଷେତ କେଉଁଠାରେ ସରେ
ସେଠି ଚନ୍ଦ୍ରାଲୋକ ସରିଯାଏ ।
ବନସ୍ତ ତା'ପରେ ।
ବନସ୍ତ ଭିତରେ ପୁଣି ପତ୍ର ଝଡ଼େ ।
ଆଉ ତୁମେ ଝଡ଼ାପତ୍ରମାନଙ୍କ ଭିତରେ ।
ମୃଣ୍ମୟ ବାହନ ଏବେ ସିକ୍ତ, ଦେବୀ,
ତୁମ କନ୍ଦନରେ ।



# ବଗିଚ୍ଚ

ସୀତାକାନ୍ତ ମହାପାତ୍ର

●

ସମୁଦ୍ରମାନେ ଯାଆନ୍ତି ଦ୍ୱୀପ ଖୋଜି
ଆକାଶ ବି ଖୋଜିଯାଏ ଶୃଙ୍ଗ ଓ ପାହାଡ଼ ॥

ମୁଁ ତୁମ ଅପେକ୍ଷା କରେ ବସି ବସି ବଗିଚ୍ଚରେ
କାଲେ ତୁମେ ଆସୁଥିବ ଫାଇଭ୍ ଡାଉନ୍ କିମ୍ବା
ବସ୍ ଧରି ଓ ଏଇନେ ପହଞ୍ଚିବ ଚାଲି ଚାଲି,
କିମ୍ବା ରିକ୍ସା ଟିଂ ଟିଂ କରି ଆସି ଛିଡ଼ା ହେବ
ଫାଟକ ସାମ୍ନାରେ । ହଠାତ୍ ଡାକ ଶୁଭିବ
"ଭଲ ଅଛ ସୀତାକାନ୍ତ, କେତେଦିନ ପରେ ଆଜି ଦେଖା"
ହେ ଅତିଥି, ହେ ମୋର ବିଶାଳତମ ଅସହ୍ୟ ବେଦନା
ହେ ମୋ ପ୍ରାଣସଖା ॥

ଏଠି ମୋର ବଗିଚ୍ଚରେ ମୁଁ ବସିବି
ଚାରିପଟେ ଦିଆ ଅଛି ଅଗସ୍ତି ଓ ଅମସ୍ତିର ବାଡ଼
ଛୋଟ ଛୋଟ ନିରାପତ୍ତା, ଆଶା ଆଶ୍ୱାସନା
ଛୋଟ ଛୋଟ ପଟାଳିର ସ୍ୱପ୍ନ ଅନାବନା
ଲୁହ ଆଉ ଦୀର୍ଘଶ୍ୱାସ ଫାଟକରେ କୋଳପ ପକେଇ ॥

ଏଠି ମୁଁ କଫି ପିଇବି
ଟ୍ରାଞ୍ଜିଷ୍ଟର ବଜେଇବି, କାଗଜ ପଢ଼ିବି
ଏଠି ସମୁଦ୍ର, ଆକାଶ ପାଇଯିବେ ଦ୍ୱୀପ ଓ ପାହାଡ଼ ।

ତମେ ଆସି ପହଞ୍ଚ ନା
ପ୍ରତୀକ୍ଷାରେ ବେଳ ସରେ, ସଞ୍ଜ ଯାଏ ମରି
ପାଣିଠୁଁ ନରମ ଆଉ ଆଲୁଅଠୁଁ ହାଲ୍କା ହୋଇ
ତମରି ଅନୁପସ୍ଥିତି ଏଠି ବିଞ୍ଚି ହୋଇପଡ଼େ
ରଣିଫୁଲ୍ ଜହ୍ନରାତି ପରି
ଓ ମୋତେ ବୁଡ଼ାଇଦିଏ

ମୁଁ ଅଭାଗା ପଶୁ ଚେର, ଶୁଖିଲା ପତର ଆଉ
ଝଁସ୍ୱଫୁଲ ନେଇ ମାପେ ମୋର ଓଦା ଆଖି ଲୁହ
ଶୁଭୁଥାଏ ଗୋଲାପର ପାଖୁଡ଼ାରେ
ଚେରର ପାଣି ଟୁନୁମା । ଗଛର ମଲା ଡାଂଗରେ
ଓ ମୋର ମଲା ହାଡ଼ରେ ପତରର ସାବ୍‌ଜାକୁ
ସପନର ନେଳଆଁକୁ ସେ ପାଣିର ଉଠିବାର କୋହ ॥

ସେ ଖାଲି ନୀରବ ସ୍ତବ୍ଧ । ଚୁମ୍‌ଗ୍ଲମ୍ ନେଗ୍ରୁଟ ହସ କାଂଦ
ଏ ବିରାଟ ଶୂନ୍ୟତାରେ, ନିଷ୍ଫଳ ପ୍ରାଂତରେ
ଗର୍ଭବତୀ କେଇଟି ସନଂଦ
ଯେମିତ ବାଡ଼ କଡ଼ରେ ନାଚ ନାଚ ସେ ଘରଚଟିଆ
ଏଇନେ ଚେଷ୍ଟା କରୁଛୁ ଭରିବାକୁ ମୋ ସ୍ଥିତିର ଆକାଶୀ ମାଠିଆ
ନକେ ସିଏ ମହାରଣା, କୁଂଭାର ଓ ଚଣକାର
ନକେ ସିଏ ଆଂବଡାଲ, ନାଶକେଲ, ଚଂଦନ ସିଂଦୂର ॥

ସଡ଼କରେ ସେମାନେ ଫେଣଯା ଆଂଢ ଅନେଇ ଅନେଇ
ଛେଳି, ଗାଈ, ମେଂଢା ଆଉ ଦୁଷ୍ଟପିଲା
ବାଡ଼ର ସାବ୍‌ଜା ଡେଇଁ ତାଂକ ଦୃଷ୍ଟି ଚରେ ବଗିଚ୍ଚରେ
ଛୁଇଁ ଛୁଇଁ ଫୁଲ ପତ୍ର ଘାସ ଆଉ ଫଳ
ଫୁଟିବା ଓ ହସିବାର ବେଦନାରେ ଯେଉଁମାନେ
ଆଖି ଛଳ ଛଳ ॥

ସେଇଠି ରାସ୍ତାର ଶେଷ
ମୋ ବଗିଚ୍ଚ ଯୋଉଠି ଆରଂଭ
ଯଦିଓ ମୁଁ ଅନେକଦାର ଦେଖିଛୁ
ରାସ୍ତାର ସେ ଲହ ଲହ ସାପ ଜିଭ
ମୁଁ ଜାଣିଛୁ, ସେ ଜିଭ ହଠାତ୍ ଦିନେ ଗୁଟିଦବ
ବାଡ, ବଡା, ପତ୍ର, ଫୁଲ, ଫଳ
ଖୋଲିଦେଇ ବଗିଚ୍ଚର ପଂଜୁଂରାରୁ ମୋ ଗଛ ଲଟାଂକୁ
ଓ ସାମିଲ୍ କରିଦେଇ ସେମାନଂକୁ ଶୂନ୍ୟ ଗ୍ରହଣୀରେ ॥

ମୁଁ ଜାଣିଛୁ ପିଲାମାନେ ଦିନେ ନା ଦିନେ ଭାଂଗିବେ ଡାଳପତ୍ର
ଫୁଲ ସବୁ ଛରଦେବେ ପାଖୁଡ଼ା ପାଖୁଡ଼ା କରି

ଗୋଷ୍ଠର ପାକୁଳ ଦେବ ଘାସକୁ ମୂକଢ
ପାଂଚରର ଶେଷସ୍ଥାନ ସୀମାଂତରେ
ହଜିଯିବ ଚୌହଦୀ ଓ ନିର୍ଦ୍ଦିଷ୍ଟ ଇଲାକା
ବିସର୍ଜିବ ଶୂନ୍ୟ ଚଉକଢ ॥

ସମୁଦ୍ରମାନେ ଯାଆଂନ୍ତୁ ଦ୍ୱୀପ ଖୋଜି
ଆକାଶ କି ଖୋଜିଯାଉ ଶୃଂଗ ଓ ପାହାଡ଼
ମୁଁ କିଂରୁ ବସି ରହିବି ତମର ବାଟକୁ ଚାହିଁ
କାଲେ ତମେ ଆସୁଥିବ ଏଇକ୍ଷଣି
ଟ୍ରେନ୍‌ର ବୃଷ୍ଟାସ୍ତୁ ଶ୍ରେଣୀ ଅଥବା ବସ୍‌ରେ
ମୋ ଘର ଠିକଣା ରଖି ପାକେଟ୍‌ରେ
ଯାକୁ ତାକୁ ପଚାରି ପଚାରି
ମୁଁ ଜାଣେ ଚଉକି ଗୁଡ଼ ଉଠିବ ନି
ବସିଥିବ ବାଟ ଚାହିଁ ଏଇ ବଗିଚାରେ
କାଲେ ତମେ ପହଂଚିବ ସଜବୁଡ଼ି ବଢ଼ ହେଲା ପରେ ॥



# ଖରାବେଳ

ସୀତାକାନ୍ତ ମହାପାତ୍ର



ଏଥରକ ବଗିଚାରେ ନୁହେଁ ॥
ଦୃଶ୍ୟପଟ—ଶ୍ରେଷ୍ଠ ମୋ କୋଠରୀ
ଏବଂ ଅକାତକାତ ପାଣିରେ ହୁଲ ଡଙ୍ଗାପରି
ବିଛଣାରେ ମୋ ପୁରୁଣା ଦେହ
ଖାଁ ଖାଁ ଖରାବେଳ ଧକୋଉଛି କୁକୁର ଜିଭରେ
ଘରଆଡ଼େ କୃଷ୍ଣଚୂଡ଼ା—ଲହୁତଳେ ଶୁଖିଥିବା ଲହୁ ॥

ହଳଦିଆ ନିଆଁର ତୀକ୍ଷ୍ଣ ବରଷା
ଧୂଳିମିଶା ପ୍ରଚଣ୍ଡ ଝଡ଼ରେ
ଶୁଖିଲା ଚମ ଦେହରୁ ଖୁଲି ହୋଇ
ପଦ ପଦ ଉଡ଼ିଯାଇପାରେ;
ଫାଁପର ହାଡ଼ର ଫ୍ରେମ୍ ସୂର୍ଯ୍ୟର ଧକ୍କାରେ
ମମ୍ମାମ୍ ଚୂନା ହୋଇପାରେ ॥
ମରୁ ମିଶି ଯାଇଥିବ ବନ୍ଧୁବର୍ଗ ତଳେ
ଦେଖିଥିବା, ମନେପଡ଼ି ପଡ଼ୁ ନ ଥିବା ସପନ
କେଉଁ ଏକ ଫଗୁଣ ସକାଳେ,
ଖରା ଏବଂ କାଉଛିର କା' କା'
ଘରେ କେହି ନ ଥିବା ଧାରଣା
ସମୁଦ୍ରର ନେଳ ଆଖି, ନାମହୀନ ଦ୍ୱୀପର ନିର୍ଜନ
ଚିରକାଳ ଦିଗ୍‌ବଳୟ କୁହୁଡ଼ିରେ ବୁଡ଼ିଥିବା
ଶୃଙ୍ଗର ଶ୍ୱେତ-ଶୀତଳ ଆମନ୍ତ୍ରଣ
ଆକାଶର [illegible]-ସିକ୍ତ ମନ ॥

ଏମିତିକା ଅବେଳରେ ସେ ଆସିବେ,
ଖାଲି ଗୋଡ଼େ ଗୁଳଗୁଳ—
ସେତେବେଳେ କେହି ନ ଥିବେ ପାଖରେ
ସ୍ତ୍ରୀ ବୁଲି ଯାଇଥିବେ ପଡ଼ଶା ଘରକୁ ଓଷଦ ଖୁଆଇସାରି,

ପିଲାମାନେ ଯାଉଥିବେ ସ୍କୁଲକୁ ଓ
ଗୃହିଣୀ ବାଜିବାପାଇଁ ବେଶ୍ ଡେରିଥିବ
ସୁକର ଘୁମାଉଥିବ ସବୁଦିନ ପରି ଏବଂ
ଘରବାଡ଼ି କାନ୍ଥବାଡ଼ ଅସରନ୍ତି ବାଲିପରି
ଯାହା ମନେହେବ ॥
ଚଡ଼କଲି ରାସ୍ତାରୁ ଘରକୁ ଦଶୋଟି ଖୋଜ
ଛତାବାଡ଼ି ଡେରଦେଇ ଦାଣ୍ଡ ବାରଣ୍ଡାରେ
ଅଶ୍ୱସ୍ତ ହୋଇବେ ସିଏ, ଯାହା ହେଉ
କୌଣସିମତେ ମନିଷ ପହୁଞ୍ଚିଲି ଠିକଣା ଯାଗାରେ ॥

ଗୃହିଣୀର ଗ୍ରୁଇ କାଦ ଛତର-ଗ୍ରୁଡ଼ଳ ହେବ
ଉଠିବସି ମୁଁ କହିବ ଏଇଥିପାଇଁ ତ
ଏତେ ଖରା ସତ୍ତ୍ୱେ ଖୋଲା ରଖିଥିଲ କବାଟ ଦୁଆର
ଗମ୍ଭୀର ମୁହଁରେ ହସ, ପଗ୍ଭରବେ ଡର ମାଡ଼ୁଛି କି ବାବୁ
ମୁଁ କହିବ କାଇଁ ? ? ନାଇଁ ତ ।

ତା'ପରେ ମୁଁ ବ୍ୟସ୍ତ ହେବ । ଗୋଡ଼ ଧୋଇବାକୁ
ପାଣି ଢାଳେ ଦବାକୁ କେହି ନାହାନ୍ତି
ମୁହଁ ଜଳ ଯାଇଥିବ ଏ ଝାଞ୍ଜି ଖରାରେ
ପଖାଳ ଶାଗଭଜା ଅନ୍ତତଃ ବଢ଼ାହୋଇଥିଲା
କୃଷ୍ଣ ଯଦି ସୁଦାମାର ଘରେ ॥

ମୋ ବ୍ୟସ୍ତତା ଦେଖି ସିଏ ସାମାନ୍ୟ ବିବ୍ରତ ହେବେ
ଟିକିଏ ହସିବେ
ସେ ହସ ଶୀତଳ ଜହ୍ନ ପରି ଯିବ ଟିକିଏ ମାଣ୍ଡେଇ
ଓଠ କଡ଼େ । ହଠାତ୍ ଦିଶିବ (ସତରେ କି ମୋ ଆଖି ସେମିତି
କମ୍ପା ମୋର ଭୁଲମନର କଳ୍ପନା)
ତାଙ୍କ ଆଖି ଅଳ୍ପ ଟିକେ ଓଦା ଓଦା,
ସେ ମୁହୂର୍ତ୍ତ କଟିଯିବ
ସେ କହିବେ ଠିକ୍ ଅଛୁ ଆସିଲେ ସେସବୁ
ଆଉ ଟିକେ ଡରଡର ଅଛୁ···ଗ୍ଭଲ ଯିବା ॥

କାହାରିକୁ ଖବର ଦେବାକୁ
ଟିକିଏ ବେଳ ନ ଥିବ
ମୁଣ୍ଡକୁ ଉଖାରି ଶତ ଚେଷ୍ଟା ସତ୍ତ୍ୱେ ପିଲଙ୍କ ସ୍କୁଲର
ଟେଲିଫୋନ୍ ନମ୍ବର ମନେ ହେବନି
କାହା ଘରକୁ ସେ ଗଲେ 'ଦେଖନ୍ତି ଅନ୍ୟତ୍ର ଯାଇ'
ସେ କଥା ବି ପଡ଼ିବନି ମନେ
ଜାଣିଥିଲି ବନ୍ଧୁ ମୋର ପହଞ୍ଚିବେ ଏମିତିଆ ଦିନେ ॥

ମିଳେ ଆସିଲେ ବା ସିଏ ଆସିଗଲେ 'ଆମେ ଯିବା'
କହିବାକୁ ପାଟି ଫିଟିବନି । ମାତ୍ର ପଡ଼ିଥିବ ଖାଲି
ଏମିତିକା ଲମ୍ବା ଶବ୍ଦ କଥା କ'ଣ କୁହାଯାଏ
ଏକେ ବନ୍ଧୁ ମଣିଷ ଆଗରେ
ଏବେ ଟ୍ରେନ୍ ଦରଜାଟା ଖୋଲାଯାଏ
ତା' ସମାନ ବନ୍ଧୁର ସାମ୍ନାରେ ॥

କଳା ଅନୁଭବ ସବୁ ସମୁଦ୍ରର ଷ୍ଟେସନ ଭିତରୁ ଆସିବେ ଗର୍ଜି
ଫେରିଯିବେ ଧକ୍କା ଖାଇ କଣ୍ଠପାଖ ବାଲି ବସ୍ତାରରେ
ସହସା ପେନ୍ସିଲ କମ୍ବା କଲମଟେ ମିଳିବନି
ଦରଧାଡ଼ି କାଗଜରେ ଲେଖିଯିବାକୁ ସାମାନ୍ୟ ଖବର କିଛି
ଭୁଲିଥିବା ଦରଦୀ ଶବ୍ଦରେ ॥

ଖାଲି ବନ୍ଧୁ ସବୁ ସେମିତି ଦାଁ କରି ଚାହିଁଥିବେ ଟେବୁଲକୁ
ମୋ ସନ୍ତାନ ଝିଅ ଏବଂ ମିଳି ଓ ତାଙ୍କର
ସ୍ତ୍ରୀଇମାନେ ଚାହିଁଥିବେ ଭୂତପରି ମଇଳା କାନ୍ଥକୁ
ହଠାତ୍ ଉଠି ବସିବ ଓ ଭୂତ ଲାଗିଲା ପରି
କହିବ ତା'ହେଲେ ଚାଲ
ଧୂଳିର ସମୁଦ୍ର ତଳେ କେତେ ଛଟା ଲାଗିଲାଣି
ମନେ ମଧ୍ୟ ବସି ବସି ଲାଗୁନେଇଁ ଭଲ ॥

ପିନ୍ଧିଥିବା ସେଇ ଗେଞ୍ଜି ପାଇଜାମା
ପିନ୍ଧି ମୁଁ ବାହାରିଯିବ, ଖୋଲି ଥିବ ଘର,
ହାତ ଧରାଧରି ହୋଇ ଦୁଇବନ୍ଧୁ
ଡଗଡଗ ଚାଲିଯିବୁ ଖବର ସହର ॥

# ମୁଗ୍ଧ ଇଲାକାରେ

ସୀତାକାନ୍ତ ମହାପାତ୍ର



ଚୁପ୍‌ଚାପ୍ ନିଃଶବ୍ଦ ଶୂନ୍ୟ ଇଲାକାରେ
ନିଃଶବ୍ଦେ ଶବ୍ଦ ସ୍ଫୁରେ ;
ଫୁଲଟିଏ ଅଲକ୍ଷିତେ ପାଖୁଡ଼ା ମେଲିଲା ପରି
ଗଛଡ଼ାଳେ ନୀରବରେ ପତ୍ର ଉପୁଜିଲା ପରି
ସନ୍ଧ୍ୟା ଆକାଶରେ କୁଆଁ ତାରା ଦୀପ ଜାଳି ଦେଲା ପରି ।।

ଆଖି ଖୋଲି ଚାହିଁ ଦେଲେ କି ଅଦ୍‌ଭୁତ ପାରିଜାତ ଫୁଲ
ଗନ୍ଧ ଗନ୍ଧ ପତ୍ରଭରା ଝୁଙ୍କି ପଡ଼େ ଡାଳ
ସାରା ଆକାଶ ବଗିଚେ ହ୍ରଦ ପରେ ରଙ୍ଗ ଝଲମଲ ।।

ବେଳେବେଳେ ଶବ୍ଦ ଡେଣା ମେଲେ
ତା' ପଛକୁ ତା'ପଛକୁ ଅସଂଖ୍ୟ ଶବ୍ଦଙ୍କ ଗୁଇ
ଅଗଣିତ କଳାକାର ତୀକ୍ଷ୍ଣଗଢ଼ ଶୂନ୍ୟତା ଆବୋର
ନିଃଶବ୍ଦ ଉପତ୍ୟକାରେ ଶ୍ୱେତରେଖା ଭେଦିଯାଏ
ଶନଶନ ନୀଳିମାର ଶାନ୍ତ ବୁକୁ ଚିର ।।

କୁଆଡ଼େ ଉଡ଼ିଯାଆନ୍ତି ଶବ୍ଦସବୁ
ଗୋଟିକ ପରେ ଗୋଟିଏ, କି ଅଦ୍‌ଭୁତ କଳରବ
ଅନ୍ଧାରର ଅଶ୍ରୁତ ଚଢ଼େଇ
ମାୟାକୁହୁକ ବଜାଏ ଶୂନ୍ୟତାର ସ୍ନିଗ୍ଧ ସାହାନାଇ
ଯେତେ ଶବ୍ଦ ଯୋଡ଼ିଲେ ବି
ସେର ମାଣ ପୂରେ ନାହିଁ, ପୂର୍ତ୍ତା ଉଠେ ନାହିଁ ।।

ଶବ୍ଦ ଗଢ଼ିଦିଏ : ଛଳ ଛଳ ଲୁହବିନ୍ଦୁ
ପଦ୍ମଫୁଲ ଡମର ଆଖିରେ
ଶବ୍ଦ ଯୋଡ଼ିଦିଏ : କୋହ କୋହ ମଶାଣିକୁ
ନବଜାତକ ଆଖିର ପ୍ରଶାନ୍ତ ଦୃଷ୍ଟିରେ ।।

ଶବ୍ଦ ଝୁଲିପଡ଼େ : କୁନି ଚଢ଼େଇଙ୍କ ପରି
ସ୍କୁଲଛାତ୍ରଙ୍କର ସବୁ ଓହ୍ଲଲରେ
ଶବ୍ଦ ଲୁଚିଯାଏ : ଏଇ ଚଢ଼େଇଟି ପରି
ପ୍ରାତ୍ୟହିକ ନିତ୍ୟକର୍ମ ନିଘଞ୍ଚ ଡାଳରେ
ଶବ୍ଦ ବହିଯାଏ : ସମୁଦ୍ର ଠିକଣା ଖୋଜି
ମୃତ୍ୟୁ ଆଉ ଅନ୍ଧାରର ମାନେ ଖୋଜି
ଆଲୁଅରେ ଝଲମଲ ଝରଣା ଓ ସବୁ ନଈଧାରେ
ଶବ୍ଦ ପଡ଼ି ରହେ : ପଥର ଅହଲ୍ୟା ହୋଇ
ସ୍ନେହମୟ ରାମଙ୍କର ପଦଧୂଳି ପାଇବା ଆଶାରେ ॥

ଶବ୍ଦରେ ଶାଣିତ ହୁଏ ଈର୍ଷାନ୍ୱିତ ତରବାରି
ଭୂଇଁ ପୋଡ଼େ, ମାଟି ଫାଟେ, ମନ ମରେ
ସ୍ୱପ୍ନର ସାବ୍‌ଜା ଦେଶ ନିମିଷକେ ମରୁଭୂମି ଧ୍ୱସ୍ତ ହୃତଶିରି
ଶବ୍ଦରେ ଘନାଏ ମେଘ, ବିଜୁଳି ବଜ୍ର ନିନାଦେ
ସ୍ନେହ ଅଶ୍ରୁ କି ଉଲ୍ଲାସେ କି ଉନ୍ମାଦେ ପଡ଼େ ଝରି ଝରି ॥

କାହିଁକି ଶବ୍ଦର ଖେଳା, କାହିଁକି ଏ ମିଛ ମେଳା
ବେଳେବେଳେ କିଏ ସେ ପଛରେ
ହାଟ ଲେଉଟାଣି ବେଳ ପାଖ ହେଲେ, ସୂର୍ଯ୍ୟ ନଇଁଗଲେ
କିଏ ସେ ମୋ ଗ୍ରୀଡ ତଳେ ଗୁଣୁଗୁଣୁ ଗୀତ ଗାଏ ଗ୍ରାଇ ନେଉଟିଲେ
ଅଦ୍‌ଭୁତ ଶବ୍ଦର ସ୍ୱର ଯା ଶୁଣିଲେ
ଭୁଲିଥିବା ସବୁ ଦୃଶ୍ୟ, ସବୁ ଦୁଃଖ, ସବୁ ଜନ୍ମ, ସବୁ ମୃତ୍ୟୁ
ସବୁ ସ୍ନେହ, ସବୁ ଅପାହୋରା ଶୋକ ପୁଣି ମନେ ପଡ଼େ ॥

ସେମାନେ ଯେ ଛୁଗୁଲନ୍ତ : ସାରା ଜୀବନଟା
ମିଛଟାରେ ମଣିଷଟେ ମାତିଅଛୁ ଶବ୍ଦଙ୍କ ଖେଳରେ
ଶବ୍ଦ ସିନା ଗୁପ୍ତବାନଟ, ଜନଛବି ବାସ୍ତବତା କେବେହେଲେ ଛୁଇଁହୁଏ
ଶବ୍ଦର ହାତରେ ॥

ଇଚ୍ଛାହୁଏ କହିଦେବି ମୁଁ ଜାଣିଛୁ ଶବ୍ଦରେ ପେଟ ପୂରେନି ଏଇଆ କହିବ ତମେ
ତଥାପି ଆଉ ଥରୁଟେ ଭାଗ୍ୟକ୍ରମେ ଜନମ ମିଳିଲେ
ଶବ୍ଦଙ୍କୁ ଧରି ଖେଳିବି ବାଲିଘର ଜୀବନର ଧୂଳିଆ ଦାଣ୍ଡରେ ॥



# ଚକ୍ଷୁଷ୍ନାନ

ସୌରୀନ୍ଦ୍ର ବାରିକ



ଅଜି ଅଉ ଦୁଃଖ ନାହିଁ, ମୃତ୍ୟୁ ନାହିଁ, ଫଜୟ ବି ନାହିଁ
ଏ ଯୁଦ୍ଧରେ ଭରିବାକୁ ଶହେ ମନ୍ତ୍ର, ଶହେ ରକ୍ତଧାର
ଶହେ ପୁଷ୍ପ-ଶୂନ୍ୟତା ପୂର୍ଣ୍ଣ କରେ ଏ ମୋର ଜୀବନ
ଅଜଣା ମଳୟ ପୁଣି ଦହଦହଏ ଏ ମୋର ଅନ୍ତର ।

ହେ ଗାନ୍ଧାରୀ ! ରକ୍ତ ମୋର, ଜ୍ୟୋତ ମୋର, ଜନନୀ ମୋ’ ଶହେ ପୁତ୍ରବୀର
ଏ ଅନ୍ଧ ଆଖିରେ ଆଜି ଜଳଉଠେ ଏ କେଉଁ ଦିଗନ୍ତ ପୁଣି
ଏ କେଉଁ ଆକାଶ
ହସି ଉଠେ ଏ କେଉଁ ପୃଥିବୀ, ଆଲୁଅ ଯେଉଁଠି ନାହିଁ, ଅନ୍ଧାର ବି ନାହିଁ
ଧର୍ମ ଯେଉଁଠି ନାହିଁ, ଅଧର୍ମ ବି ନାହିଁ, ସୁଦର୍ଶନ ଚକ୍ର ନାହିଁ,
ନାହିଁ ଶତ କୌରବ ମସ୍ତକ

ଉଦ୍ଭାସିତ ଯହିଁ ଖାଲି ଶୂନ୍ୟତାର ରସିକ ସନ୍ନ୍ୟାସ ।

ହାତ ଧରି ଡାକେ ଆଜି ତୁମକୁ ମୁଁ ମହା ଚକ୍ଷୁସ୍ନାନ
ହାତ ପାଦ ପକ୍ଷ ହୁଏ କଣ୍ଠେ ଖାଲି ନୀରବର ଗାନ ।



# ନିମନ୍ତ୍ରଣ

ଦୀପକ ମିଶ୍ର



କ'ଣ ଭାବୁଚୁରେ ପକ୍ଷୀ
ବେକ ଭାଂଗି ଅବସନ୍ନ ଡେଣା ଉହାଡ଼ରେ,
କ'ଣ ତୋ କୁଟୁମ୍ବ ତୋତେ ଛାଡ଼ିଗଲେ
ନା, ତୁ ହଡ଼ିଛୁ ବାଟ ନିକାଂଚନ ଦୁରନ୍ତ ହାତରେ,
କିଂବା କେଉଁ ସ୍ୱପ୍ନିଳ ଭବିଷ୍ୟତପାଇଁ
ତୁ ଏମିତ ବସିଛୁରେ ନିର୍ବିକଳ୍ପ ଆସନ ବିଛାଇ ।

କହ ମୋତେ କ'ଣ ତୋର ଦୁଃଖ :
କିଏ ସେ ଦେଇଛି ବାଧା ତୋ' ବିଶ୍ରାଂବିଳାସରେ
କିଏ ସେ ନେଇଛି କାଢ଼ି ଅପୂର୍ଣ୍ଣ ଲୋଭରେ
ତୋ' କୋଳର ଛୁଆକୁ ବା କାହା ଶରର ଶବ୍ଦ
ତୋ ପରକୁ କରିଛି ବିଦୀର୍ଣ୍ଣ ଓ ସ୍ୱରକୁ ନିସ୍ତବ୍ଧ ॥

ବୋଧେ ସେଇ ପିଶାଚର ବିସ୍ତାରିତ କାୟା
ତୋ' ଡୋଳାରେ ଲଗାଇଛି ବିପରୀତ ମାୟାର ଅଂଜନ
ତୋ' କପାଳରେ ଜଳାଇଛି ଅଶେଷ ଶୋକର ଚିହ୍ନ
ତେଣୁ ତୁ କି ମାଟି ଛାଡ଼ି ଅଂତରୀକ୍ଷେ ରଖିଛୁରେ ମନ ?

ଆ, ତୁ ଓହ୍ଲାଇ ଆ, ମୋର ଏଇ ପୃଥ୍ୱୀର କୋଳକୁ
ନା'ରେ ତୁ ଯା' ଭାବୁଛୁ ଏଠି ଥିବ ହିଂସା ଆଉ ଲୋଭ
କିଂବା ଥିବ ପରଶ୍ରୀକାତରତାର ଅନ୍ୟ ଏକ ରୂପ,
ନା, ତୁ ଯଦି ଉଡ଼ିଆସୁ ତୋର ନୀଡ଼କୁ ଫେରିବା ଭଙ୍ଗୀରେ
ମନକୁ ଖେଳାଇ ନ ଦେଇ ଅବିଶ୍ରାଂତ ଶୂନ୍ୟ ମଂଡଳରେ,

ମୋର ଯେତେ ପଶୁତା ଓ ଅମାନମନ୍ୟତା
କିବା ଅନ୍ୟ ଯାହା ମଣିଷକୁ ନିଜଠାରୁ କାଢ଼ିନିଏ
ସ୍ଥୂଳ ସମୟରେ, ସବୁକୁ ଏକାଠି ରଖି ସନ୍ନ୍ୟାସୀର

ଗୈରକ ମୁଣିରେ, ମୁଁ ବିଦାୟ ଦେଇଦେବି ତୋ' ଗ୍ଲାନି<br>
ମୋ କୋଳରେ ପଡ଼ିବା ପୂର୍ବରୁ । ତୋ' ପ୍ରସନ୍ନତାର<br>
ଅଂଶର ଲାଞ୍ଛନାରେ ଏ ସନ୍ଧ୍ୟାର ନିଃସଂଗତା ଦୂର ହେଉ,<br>
ଯେପରି ବର୍ଷାର ଉଲଗ୍ନ ଶୀତଳ ହାତ ଅନ୍ୟକୁ ଦେଇଥାଏ<br>
ଅନନ୍ୟ ଉତ୍ତାପ । ତୁ କାହିଁ ଭୋଗିବୁରେ<br>
ବର୍ଣ୍ଣହୀନ, ଦୃଶ୍ୟହୀନ, ଶବ୍ଦହୀନ ନିର୍ଜନତାର ଆନୁଗତ୍ୟ<br>
ଯେ ଦେବ ବିଦାୟ ତୋର ଦୁଃଖମସ୍ତ ଉଦାସ ସପନ ॥

ଆଉ କ'ଣ ଭାବୁଛୁରେ ଧନ<br>
ମୋ କୋଳରେ ଲୁକ୍‌କାୟିତ ସେଇ ବୃଂଦାବନ,<br>
ମୋ ମୁଠାରେ ରାଇ-କମଳିନୀ ରହିଛି ବିଭୋର<br>
ଯଦିଓ ତା' ଅଂଗବାସ ପଡ଼ିଅଛି ମଲା-ସାପ ପରି<br>
କେଉଁଆଡ଼େ ଉଡ଼ିଗଲା ଅହଂକାରୀ ଧୂର୍ତ୍ତ କର୍ପୂର ।

ଏଇ ଲୁହାଁ, ମୁଁ ଖୋଲିଲି ହାତମୁଠା<br>
ମୋ ଖୋଲା ପାପୁଲିରେ କେମିତି ଜଳେରେ ମୋହ<br>
ଅସମର୍ଥ ଶବ ପରି ଓ ଭ୍ରୁସ୍ତାପଥେ ଲୁଚିଯାଏ ନିରୁଦ୍ଧବନ୍ଧ<br>
ଅରୁଂଧତୀର ଅଗ୍ନି ବଳୟରେ । ଆଖି ଖୋଲ,<br>
ଥରେ ହେଲେ ଆଖି ଖୋଲ୍‌ରେ ପକ୍ଷୀ !<br>
ଡର କ'ଣ, କାହାକୁ ବା ଡର—ଏଇ ଦେଖ୍,<br>
ଏ ବ୍ରହ୍ମାଂଡ ହିଁ ମୋର କୋଳ । ଆ, ତୁ ଖସି ଆ,<br>
ନିଃସଂଗତାର ଦୁର୍ଗ ଭିତରୁ ପିଶାଚର ବେକ ଚିପି<br>
ଓ ମୋ କୋଳରେ ବସି ଥା'ତୁ ଅମର ଆୟୁଷ ନେଇ ॥



# ହଳଦ ବସନ୍ତ

ଡଃ ପ୍ରସନ୍ନକୁମାର ମିଶ୍ର



ସକାଳୁ ସକାଳୁ
ହଳଦ ବସନ୍ତଟିଏ ଦେଖିଲେ
ମନ ପ୍ରଫୁଲ୍ଲ ହୋଇଥାଏ ।
ଗୋଟାଏ ଅଜଣା ଶୁଭ-କୋମଳତାରେ
ଚଉଦିକୁ ସତେକି କଣ
ସେ ଦେଖାଦିଏ ଓ ଲୁଚିଯାଏ ।

ଖୋଜିଲେ ମିଳେନା, ଭାବିଲେ ଆସେନା, ଡାକିଲେ ଫେରେନା ।

ଅଥଚ, ଅକସ୍ମାତ୍ ପୁଣି କେବେ
ଆଖିର ଶାନ୍ତ ହ୍ରଦ ଓ
ନୀଳ କୁଞ୍ଜର ଆକାଶରେ
ସେ ଆପେ ଆପେ ପର ଝାଡ଼େ ।

କୌଣସି ଋତୁର ସ୍ମରଣ ସେ ନୁହେଁ ।
ବର୍ଷ ତମାମ ତା'ର ଦେଖା ମିଳିପାରେ
କିନ୍ତୁ, ଏପରି ତ ଅନେକ ବର୍ଷର ଜଞ୍ଜାଳ ବିତିଚି
ହଳଦ ବସନ୍ତକୁ ଆଦୌ ଦେଖିନି ମୁଁ ।

ଆମ ସାଇର ସେଇ ଶ୍ରେଷ୍ଠ ଝିଅଟି
ହଳଦ ବସନ୍ତଟିଏ ଦେଖିଲେ
କୁଳୁଶ ଉଠେ,
ଦେଖିଚ ଦେଖିଚ ବୋଲି ପାଟିକରେ ।
ତା'ର ସାଥୀମାନେ
ଉତ୍କଣ୍ଠାର ସହିତ ଚାହିଁଲା ବେଳକୁ
ପକ୍ଷୀଟି ପ୍ରାୟ ଲୁଚି ଯାଇଥାଏ ।
ସେ ହୁଏ…'ମିଛେଇ' ।

ଏମିତ ବ ହୁଏ…
ପ୍ରମାଣ ଯୋଗାଇ ନ ପାର
ପରିହାସ-ସିକ୍ତ ଝିଅଟିର କାମିନୀ-ପଦ୍ମପରି ଆଖି

କରୁଣ ଚନ୍ଦ୍ରୋଦୟରେ ହୋଇଥାଏ ଛଳଛଳ ।
ପଲକେ ଦେଖାଦେବା ଓ ପଲକେ ଲୁଚିଯିବା
ଯେପରି କ ହଳଦ ବସନ୍ତର ଆଭିଜାତ୍ୟ ଓ ବିଳାସ ।

ସେ ଗାୟିକା ନୁହେଁ,…
ଏକ ଅପାର୍ଥିବ ଗୀତ ।
ସେ ନର୍ତ୍ତକୀ ନୁହେଁ,…
ଏକ ଆକାଂକ୍ଷିତ ନାଚର ଦୃଶ୍ୟ ।
ଏକ ଆଶ୍ଚର୍ଯ୍ୟ-ବସନ୍ତ ପରି ସେ ଆସେ,
ଓ ବ୍ୟାକୁଳ ପ୍ରାଣରେ
ମନ୍ଦିରର ସହସ୍ର-ଘଣ୍ଟା ବାଜି ଉଠେ ।

ଶୁଣିଚ…
କୌଣସି ଏକ ପୁଷ୍ପ-ମଣ୍ଡିତ ଶ୍ୟାମଳ ଅରଣ୍ୟକୁ
ଅସଂଖ୍ୟ ହଳଦ ବସନ୍ତ ଆସନ୍ତି ।
କିନ୍ତୁ, ସେ ତ ଏକ ଦୂରବର୍ତ୍ତୀ ଜୀବନ
ଅର୍ଥ-ପୀଡ଼ିତ ସଂସାରୀ ମୁଁ,
ଯିବ କେମିତ ?
ସେଇ ଝିଅଟି
ଏବେ ଦନେ ଦନେ
ହଳଦ ଲଗାଇ ଗାଧାଏ
ଏବଂ ଆଖିରେ କଜଳ ପିନ୍ଧ
ବନସ୍ତ ଆଡ଼କୁ ଏକାନ୍ତରେ ଚାହିଁ
ଭାବେ
ଯଦ ସେ
ଗୋଟିଏ ଡାଳରେ
ଯୋଡ଼ାଏ ହଳଦ ବସନ୍ତ
ଦେଖିପାରନ୍ତା !!



# ସକାଳ

ସୌଭାଗ୍ୟକୁମାର ମିଶ୍ର



ସକାଳ ହେବା ଆଗରୁ କହି ଦେଇ ଯାଏଁ ।

ସକାଳ ନିଶ୍ଚେ ଆସିବ
ଗୋଡ଼ ଲମ୍ବାଇ ବସିବ
ଏଇ ସମୁଦ୍ର ବାଲିରେ,
ତତେ ଡାକିବ, ମୋତେ ଡାକିବ
ଡାକିବ ଝାଉଁ ଗଛକୁ, ସୂର୍ଯ୍ୟକୁ,
ଅନିଦ୍ରା ଥିବା କବିକୁ, ପ୍ରେମିକକୁ ।
ତା'ର ଉଦାର କୋଳରେ ଅଭ୍ୟାଗତଙ୍କୁ ଭରିଦେବ
ଅର୍ଥରେ, ଧର୍ମରେ, କାମନାରେ, ମୋକ୍ଷରେ ।

ଅର୍ଥ : ଯାହା କାଲି ସନ୍ଧ୍ୟାରେ ସମୁଦ୍ରର ଲବଣ ନିଃଶ୍ୱାସରେ
କ୍ଷୟ ହେବା ଆଗରୁ ପତିତ ହୋଇଗଲା
ମୋ' ଆତ୍ମାର ନିଭୃତତମ ପକେଟ୍‌ରେ;
ଧର୍ମ : ଯାହା ତୋର ଦୁଆର ଆଗରେ
ମୋର କ୍ଷୁଧାର୍ତ୍ତ ଅପେକ୍ଷାରେ ପ୍ରତିବିମ୍ବିତ ହୋଇଗଲା
ମୁହୂର୍ତ୍ତିକପାଇଁ;
କାମନା : ଯାହା ବିଳମ୍ବିତ ଶୈଶୁଚିର ସମ୍ଭାବନାରେ
ଅସ୍ଥିର, ଉଦ୍ଦାମ କରିଥିଲା ତୋର ଗର୍ଭକୁ ;
ମୋକ୍ଷ : ଯାହାକୁ ମୁଁ ଉପହସିତ ପାପୀ ବନ୍ଧୁ ରୂପରେ
ଛାଡ଼ିଦେଲି କାଲି ସନ୍ଧ୍ୟାର ଏକ୍‌ସପ୍ରେସ୍‌ରେ ।

ସକାଳ ସବୁଥର ଦର୍ପଣ ହୋଇ ଆସିବ
ତୋର ଡ୍ରେସିଂ ଟେବୁଲ୍‌କୁ ,
ସାଢ଼େ ଆଠଟାବେଳେ ଭାଙ୍ଗିଥିବା ମୋର ଅସଭ୍ୟ ସ୍ୱପ୍ନକୁ ।
ଦେଖିବୁ ହୃଦୟେଶ୍ୱର ! ବର୍ଣ୍ଣବିଭବ ସକାଳର
ତୋର ପରିଚିତ ଉଦାତ୍ତ ଆକାଶରେ,

ସୁଖ ତୋର ନୁହେ କି ମୋର ନୁହେ
ସୁଖ ଆମର, ଅଥଚ ପ୍ରସ୍ଫୁରିତ
ସ୍ୱଦେଶୀ ସମୁଦ୍ରର ଫେନମସୃ ଉଚ୍ଛ୍ୱାସରେ,
ରଙ୍ଗୀନ ପକ୍ଷୀର ଉଲ୍ଲାସରେ,
ତୋର ଗୋପନ ସ୍ୱାସ୍ଥ୍ୟ ପରି କଠିନ, ସୁଠାମ,
ଦୀର୍ଘଜୀବୀ ସେ ସୁଖ
ମୋ କଟିଦେଶରୁ ଉଚ୍ଚାରିତ ଶବ୍ଦ ପରି;
ରକ୍ତ ପରି, କ୍ଷୀର ବିନ୍ଦୁ ପରି,
ଅନାଗତ ଶିଶୁଟିର କୋମଳ ହସ ପରି ।

ମୁଁ ପାଗଳ ହେଲେ ବି ସମାହୃତ ଏ ମୁଖରେ
ଯା' ସକାଳ ନେଇ ଆସିବ ତା'ର ଉଜ୍ଜ୍ୱଳ ସ୍ନେହରେ
ଏକାନ୍ତ ମନ୍ଦାର,
ତୁ ନେଇ ଆସିବୁ
ମୋର ନିଦ୍ରିତ ମଶାରି ଭିତରକୁ
ଗରମ ଚା'କପ୍‌ରେ ।

ତୁ ମୋର ସକାଳ, ମୋର ସଂସାର, ମୋର ଭୁଲ୍
ମୋର କୃତଜ୍ଞ, ମୋର ଯାଦୁଖେଳ
ଲୋକଙ୍କ ବଜାରରେ ।

ଏବେ ଝିଙ୍କାରି ହେଲେଣି କ୍ଳାନ୍ତ, ପବନ ଅଦୃଶ୍ୟ ନୁହେ,
ପକ୍ଷ ଝଡ଼ି ପଡ଼ୁଛି ପାତଳା ଅନ୍ଧାରରେ,
ବାଲି ଖସି ଯାଉଛି ନରୋଳା ବାଲିବନ୍ତରୁ,
ଫୁରୁ ଫୁରୁ ଉଡ଼ୁଛି ବାଳ ତୋର
ମୋ' କାନ୍ଧ ଓ ବେକର ପରିକଳ୍ପିତ ରାଜ୍ୟରେ;

ନିଦ୍ରାହୃତ ହାତରେ ଆଉଁସି ଦେଲି ବେଳେ
ତୋର ଅଲିଙ୍ଗନାସ୍ପିତ ପିଠି
ମନେହୁଏ ନିଦ୍ରାରେ ବି, ସ୍ୱପ୍ନରେ ବି
ଭଲ ପାଇ ହୁଏ ଏ ପୃଥିବୀକୁ, ସମୁଦ୍ରକୁ, ବ୍ୟାକୁଳ ପଡ଼ୋଶୀକୁ,
ନିଦ୍ରାରେ ବି ମିଳେ କ୍ଷମା,

ମିଳେ ଶାନ୍ତ ଯା' ଅଯଥା ମ୍ଳାନରେ ମୁଖର
ଉପସ୍ଥିତ ଅନେକ ମଧ୍ୟାହ୍ନରେ, ଶବ୍ଦରେ, ଅକସ୍ମାତ୍ ଦେଖାରେ ।

ଏବେ ତାରା ଓ ନକ୍ଷତ୍ର ଗୁଳିଲେ ଦୂରକୁ ଦୂରକୁ ;
ଅଯୋଗ୍ୟ ମାଟି ଓ ଝାଉଁଗଛ, ଘର ଓ ସମୁଦ୍ର,
ଅଯୋଗ୍ୟ ଲାଳସା ଏ ଦେହର, ହାତର, ପଲଙ୍କର,
ଅଯୋଗ୍ୟ ସହର, କାଳ, ଇତିହାସ, ଅଯୋଗ୍ୟ ଏ ଗ୍ରହ ।

କ୍ଳାନ୍ତ ବାହୁର ବେଢ଼ାରେ ଯେ ଆଲୋକକୁ, ଦେବତାକୁ
ବାନ୍ଧି ରଖିଛୁ, ସୁନ୍ଦର ! ତୋ' ଦୀର୍ଘ ନିଃଶ୍ୱାସର
କମ୍ପନ ଅର, କାଠଚମ୍ପା ଡାଳରେ,
ତା' ଆକସ୍ମିକ ସତ୍ତା, ଅଥଚ
ଆକସ୍ମିକ ସତ୍ୟରେ ହିଁ ମୂଲ୍ୟବାନ୍ ତୋର ଯୌତୁକ ।

ଏବେ ସମସ୍ତେ ଉଠିବେ ସିଂହ ଓ ଶଶକ,
ହଂସ ସମ୍ରାଟ୍, ବଜାର ମୂଷିକ-ସୈନିକ,
ପରବର୍ତ୍ତିତ ଆହ୍ଲାଦରେ ଗେଣ୍ଡା ଗୁଳିବ
ରୁକ୍ଷ ବଲ୍‌କଲର ଉଦାର ପିଠିରେ;
ଏବେ ପୁଣି ଲୋଭ ଉଦ୍‌ବାସ୍ତୁ ହେବ
ପ୍ଲାଟ୍‌ଫର୍ମରେ ଭିକାରୀର ସିନ୍‌ଭର୍ ଗିନାରେ,
ଏବେ ପୁଣି ଗୋଲ୍ ଗୋଲ୍ ଅନ୍ଧକାସ୍ତ ଡୋଳା ଖୋଜିବ ସନ୍ନ୍ୟାସୀ,
ଗରୁଡ଼ସ୍ତମ୍ଭ ଆଗରେ ଡାକିବ 'ନୟନ ପଥଗାମୀ ଭବତୁ ମେ',
ଏବେ ପୁଣି ଚନ୍ଦ୍ରକାରରେ ଭର୍ତ୍ତି ହେବ ଅର୍ଣ୍ଣି
ସମୁଦ୍ରର, ସହରର, ସମସ୍ତର ।

କେହି ଦେଖିବେ ନାହିଁ, ଶୁଣିବେ ନାହିଁ,
ଏକ ନଷ୍ଟରୁଣ ଆଖିର ପଲକ ପଡ଼ିଯିବାର ଦୃଶ୍ୟ,
ଏକ ନଷ୍ଟରୁଣ ଆଖିର ପଲକ ପଡ଼ିଯିବାର ଶବ୍ଦ;
ଶିଶିର ବିନ୍ଦୁ ଶୁଭ୍ରତର ହେବ ଅନ୍ଧାରରେ,
ଅନ୍ଧାରରେ, ସ୍ୱପ୍ନରେ ହିଁ ସତ୍ୟ ଲୁଚିଯିବ;

ଏବଂ ସମୁଦ୍ରର ନିବିଡ଼ ନୀଳିମା ଭିତରେ
ଆସ୍ତେ ଆସ୍ତେ ହଜିଯିବ, ଅଦୃଶ୍ୟ ହେବ

ଆମର ଜାହାଜ,
ଦୀର୍ଘ ଦୁଇବର୍ଷର ଆକୁଳ ପ୍ରାର୍ଥନାର ରକ୍ତମାଂସ,
ଅସ୍ଥିର ଥରଥର ପ୍ରାଣ ।

ସମୁଦ୍ର ସବୁ ଗିଳି ପକାଏ, ସମୁଦ୍ର ରାକ୍ଷସ,
ସମୁଦ୍ର ମୋତେ କ୍ଷଣିକ ଆଶ୍ୱାସନାରେ ବିଭୋର କରିଦିଏ,
ସମୁଦ୍ର କେତେ ମିଛ କନ୍ଥ ଫେରାଇ ଦିଏ ଏକାନ୍ତ ଗୁମ୍ଫାକୁ ।

ସକାଳ ହେବା ଆଗରୁ ପଶୁରି ଦେବା ଭୁଲ
ସେଇ ଅପରିଚିତ ଅତିଥିକୁ
ଯାହାର କଥା ଆମେ ଶୁଣିନେ ସ୍ୱପ୍ନରେ
ଯାହାର ଦୀର୍ଘ ପୋଷାକ ମିଶିଯାଏ
ଅପସରି ଯାଉଥିବା ଅନ୍ଧାରରେ,

ଏଇ ବିନ୍ଦୁଏ ଶିଶିର କ'ଣ ସବୁ ଅର୍ଥର ଅର୍ଥ
ସଜ କାଠଚମ୍ପାର ପାଖୁଡ଼ାରେ ?
ତୋର କ୍ଳାନ୍ତ ଦେହର ପୁଷ୍ପିତ ଶବାଧାରରେ ?
ଏ କ'ଣ ଆମ ଆକୁତିର ଉତ୍ତର ?

ଏ ବିନ୍ଦୁଟି କ୍ଷୀର କରିଦିଅ ହେ ଅତିଥି
ମୋର ଅନାଗତ ଶିଶୁପାଇଁ, ମୋର ସକାଳପାଇଁ
କାଚ କାଞ୍ଚନରେ ମତ୍ତ ମୋ' ଭବିଷ୍ୟତପାଇଁ ।

ଏଇ ଶୁଣ୍ ସୁନ୍ଦରି ! ପକ୍ଷୀ ଉଡ଼ିଯିବାର ଶବ୍ଦ,
ସମୁଦ୍ରର ଲହଡ଼ିରେ ଡଙ୍ଗା ନାଚିବାର ଶବ୍ଦ
ଅବାରିତ ସକାଳର ପାଦଶବ୍ଦ ବାରନ୍ଦାରେ,
ହିଂସା ଓ ଅହଂକାରର ଶବ୍ଦ, ଭୃଙ୍ଗ ଓ ମକ୍ଷିକାର,
ମୃଦଙ୍ଗ ଓ କରତାଳି, ମହାଯୁଦ୍ଧର ଶବ୍ଦ,
ହାହାକାର ବନ୍ୟାର, ଦୁର୍ଭିକ୍ଷର ମଡ଼କର
ତୋଫାନର, ବିସ୍ଫୋରଣର, ଦାଙ୍ଗାର, ମୃତ୍ୟୁର
ରେରେକାର, ଜୟକାର, ହୁଙ୍କାର ଓ ଛମିକାର···

ସବୁ ଶବ୍ଦର ଅନ୍ତରାଳରେ ନୀରବତା,
ନୀରବତାର ଗମ୍ଭୀର ଅସ୍ପଷ୍ଟ ସ୍ୱର;

ଦେଖ୍ ସେ ଆଖିର ପଲକ ପଡ଼ିଯାଏ,
ଆକାଶ ପରି ବିଶାଳ ଓ ନୀଳ ସେ ଆଖି ।

ସବୁ ସତ୍ୟ ଏପରି ଅନ୍ଧାରରେ, ଆଲୋକରେ
ନିସ୍ପନ୍ଦ ଶାମୁକାଟି ପରି ବନ୍ଦ୍ ହୋଇଯାଏ,
ଲାଜକୁଳି ପତ୍ର ପରି ବୁଜି ହୋଇଯାଏ,
ଯାହା ଲୁଚି ଯାଉଛି ତା' ସତ୍ୟ,
ଖୋଲ୍ ତ ଦେଖି
ତୋ' ମୁଠା, ତୋ' ଦେହ, ତୋ' ସ୍ନେହ,

ସକାଳ ହେବା ଆଗରୁ ସବୁ ସଢ଼ିଯାଏଁ ।



# ଅନ୍ଧ ମହୁମାଛି

ସୌଭାଗ୍ୟକୁମାର ମିଶ୍ର

●

।। ଏକ ।।

ଫାଙ୍କା ଧୂ ଧୂ କ୍ଷେତର ଦାଢ଼ରେ ଠିଆହୋଇ ଏକେଲା
ଶୁଣେ ପକ୍ଷୀ ଉଡ଼ିଯାଏ ଡେଣା ଫଡ଼୍ ଫଡ଼୍ କରି
ପବନର ଅକୁଣ୍ଠିତ ଚୁମା ଭିତରକୁ ,
କେହି କୁଆଡ଼େ ନାହାନ୍ତି, ଜାଣିପାରେ
ବେଗା, କୋଦାଳଧରା, ବଷଣ୍ଡ ମଣିଷ
ପଛେ ପଛେ ସ୍ତ୍ରୀ, ପିଲା ଓ ବଡ଼ଟିର ହାତରେ ଛଟପଟ କଙ୍କି ।

ଏଇ ଏକାନ୍ତ ଅପେକ୍ଷା
ଜୀବନର ପ୍ରଥମ କଣୋଷି ପ୍ରେମିକାଠାରୁ ବ ବେଶୀ ପବନ୍ଧ ।

।। ଦୁଇ ।।

ମରୁଭୂମି ଓ ସିପାହୀଙ୍କ କୁତ୍ସିତ ଆଦେଶରେ, ମୁଁ ଜାଣେ,
ପାଣି ଖୋଜି ଯିବାକୁ ହୁଏ,
ଲାଲ୍ ମାଙ୍କଡ଼ସାର ଅଦୃଶ୍ୟ ଜାଲ ଭିତରକୁ
ନଗ୍ନିହ ପୋକଟିକୁ ଫିଙ୍ଗି ଦେବାକୁ ହୁଏ,
ମାତାଲ, ମୃତଦାର ପଡ଼ୋଶୀଙ୍କର କାନ୍ଦୁଣି ସାନ ଝିଅଟିକି
ସ୍ତ୍ରୀର ହାତକୁ ଟେକି ଦେବାକୁ ହୁଏ,
ଶୁଖିଲା ସାଇକେଲ୍‌ର କେଁ କଟର ଶବ୍ଦରେ
ବୁଝିଯିବାକୁ ହୁଏ ବୁଢ଼ା ପିଅନ୍‌କୁ
ଭଉଣୀର ଆତ୍ମହତ୍ୟାର ନିଶ୍ଚିତ କାରଣ ।

ଯା'କୁ ଧର୍, ତା'କୁ ଗୁଡ୍, ତା'କୁ ଫିଙ୍ଗି ଦିଅ କେନାଲ ପାଣିକି,
ଯା'କୁ ଛୁଅଁ, ତା'କୁ ଦେଖ୍,
ବୋକା ଇନ୍ଦ୍ରଧନୁମାନଙ୍କୁ ପରେଡ୍‌ରେ ଠିଆକରି କମାଣ୍ଡ୍ ଦିଅ,
ଜାବୁଡ଼ି ଧରି ରଖ ଏ ପୃଥିବୀକୁ
ସିଂହଦ୍ୱାରଠୁ ଅଗଣାର ଶିମିଳିଟା ପର୍ଯ୍ୟନ୍ତ ଯା' ବିସ୍ତୃତ ।

॥ ତିନି ॥

କିଛି ଖସିଯାଇ ପାରେନା ହାତମୁଠାରୁ
କେହି ଖସିଯାଇ ପାରନ୍ତି ନାହିଁ ବାଘବନ୍ଦୀ ଖେଳରୁ ;
ଭୁଲ୍ ଆଉ ଠିକ୍ ଆଉ ଠିକ୍ ଆଉ ଭୁଲ୍
ପ୍ରଶ୍ନ ଓ ଉତ୍ତର, ପରୀକ୍ଷା ଓ ନମ୍ବରର
ଜମିଲା ଖେଳ ଭିତରେ ଆସ୍ତେ ଆସ୍ତେ ଆପେ ଆପେ
ଜଉଘର ଜଳୁଥାଏ, ପିଲା କାନ୍ଦୁଥାଏ,
ପାଗଳ ବୁଢ଼ାବାପା ଉଠୁଥାନ୍ତି, ଶୋଉଥାନ୍ତି, ଉଠୁଥାନ୍ତି
ଅଶ୍ଳୀଳ ଚିତ୍କାରର ଘଞ୍ଚ କୁହୁଡ଼ିରେ
ବୋଉ ବୁଢ଼ୀ ହେଉଥାଏ, ଲୁଗା କାନିରେ ଲୁହ ପୋଛୁଥାଏ ।

କେହି ଖସିଯାଇ ପାରେନା, ନା ଫୁଲ ନା ଭ୍ରମର
ନା ରେଫରି ନା ଖେଳୁଆଡ଼
ନା ମୃତ୍ୟୁ, ନା ଜୀବନ,
ସବୁ କେବଳ ଓହ୍ଲାଇ ଆସନ୍ତି
କୌଣସି ବିଚିତ୍ର ଉପନ୍ୟାସର ସତାବନ ପୃଷ୍ଠାରେ
ଲଖି ରହି ଯାଇଥିବା ଅଗ୍ନିକଣ ପାଉଁଶ ଝିଙ୍କରୁ
ଯା'ର ନା ମୂଳ
ଓ ପ୍ରସିଦ୍ଧ ସତ୍ୟ ପହଁରୁଥାଏ ପବନରେ ।

। ଚାରି ॥

ସେ ନାରୀ ମତେ ଭଲପାଏ ଭଲପାଏ
ମୋ' ଉଦ୍‌ଭ୍ରାନ୍ତ ଆଲସ୍ୟକୁ, ମୋର
ପ୍ରବଳ ପରାକ୍ରମୀ ଅନିଷ୍ଟିତତାକୁ,
ସେ ଲୋକ ପସନ୍ଦ କରେ ମୋ' ପେଷାଦାରୀ ହାତକୁ ଓ
ଅକସ୍ମାତ ମୋ' ମୁହଁରୁ ମୁଖା ଟେକି ଦେଇ କହେ, "ଓ ! ତମେ ?
ତମ ସାଙ୍ଗରେ ଦେଖା ହୋଇଥିଲା ନା ଗଲାବର୍ଷ ଡିସେମ୍ବର୍‌ରେ,
ବୋଧହୁଏ ଟ୍ରେନ୍‌ରେ ?
ଇଣ୍ଟରଭ୍ୟୁ କ'ଣ ହେଲା ? କ'ଣ ହେଲା ଗ୍ରୁକାରୀ ?
ପାଞ୍ଚ ସାତ କୁଣ୍ଢେଇ କାଟଖାଇ ଥର ଥର ପାଦରେ
ଓହ୍ଲାଇ ଆସେ ସିଡ଼ିରେ ରଘୁବାବୁଙ୍କର ଷୃଶବର୍ଷର ଝିଅ,

ମତେ ଶୁଣିବାକୁ ହୁଏ,
ଏମାନେ ସମସ୍ତେ କ୍ଷୀର ପିଇ ଶୋଇ ପଡ଼ିଲେଣି କାକା !
ଆଉ ମତେ ବୁଝିସିବାକୁ ହୁଏ ଯେ
ଆଉ କିଛି ସମୟ ପରେ ଆମେ ସମସ୍ତେ ଶୋଇ ପଡ଼ିବା
ଆମ ପାଦ ଉପରେ ଗୁଳିଯିବ ସାପ ପରି ମସୃଣ ସମୟ,
ହାତ ପାଆନ୍ତାରେ କଢ଼ି ଖୋଲିଯିବ ପାଖୁଡ଼ା ପାଖୁଡ଼ା ଫୁଲକୁ,
ଏବଂ ଗୁଡ଼େ ମିଛି ମିଛି ଲଣ୍ଠନ
ଫାଙ୍କା ଧୂ ଧୂ କ୍ଷେତରେ ଏଣେତେଣେ ବୁଲୁଥିଲେ ଖୋଜି ଖୋଜି
ଶତାବ୍ଦୀ ଶତାବ୍ଦୀ ଧରି ହଜି ଯାଇଥିବା ଧଳା ଘୋଡ଼ାକୁ ।
ଘୋଡ଼ା ପିଠିରେ ସବାର ଅନ୍ଧ ଜମିଦାରକୁ ।

॥ ପାଞ୍ଚ ॥

ଅପେକ୍ଷା କେଡ଼େ ଚମତ୍କାର ! ଖାଲି
ଆସୁଥିବା ଲୋକଟି ଏଥ ମୋହ ନ ଥିଲେ ହେଲା
ଖୋଜିବା କ ବଡ଼ ଉତ୍ତେଜନା !
ମିଳି ଯାଉଥିବା ଗଣ୍ଠିଲିଟା ମୋର ନ ହେଲେ ହେଲା,
କାନ୍ଦିବା କ ଚମତ୍କାର ! ଖାଲି
ଆଖି ଶୁଖି ଯାଇଥିଲେ ହେଲା,
ସତୁରି ବର୍ଷ ବୟସରେ କର୍ଦ୍ଦମାକ୍ତ ଗଣ୍ଡକୁ ଡେଇଁପଡ଼ିବା
କ ଚମତ୍କାର ! ଖାଲି
ମୃତଦେହ ନ ମିଳିଲେ ହେଲା ।

॥ ଛଅ ॥

ସବୁଠି ମଜ୍ଜା, କଣ୍ଟକରେ, କଦମ୍ବରେ, ଖଟରେ, ଖଳାରେ
ଗୁମାନରେ, ଗରୁଡ଼ସ୍ତମ୍ଭରେ, ଘଣ୍ଟାରେ ଘିଅରେ, ଚେରରେ, ଚନ୍ଦ୍ରାରେ,
ଚକରେ, ଛୁରରେ, ଜାମୁଗୋଲରେ, ଜେଲରେ, ଝଡ଼ାପଡ଼ରେ,
ଝିଙ୍କାଖିର ଶବ୍ଦରେ, ଟିପଚନ୍ଦନରେ, ଟାଙ୍ଗର ମାଟିରେ
ଠାରରେ, ଠିକ୍ ଠ-ବର୍ତ୍ତୁଳ-ଚନ୍ଦ୍ରାନନରେ, ଡାଳରେ, ଡମ୍ବରୁରେ,
ଢାରୁଣୀରେ, ତନ୍ଦ୍ରାରେ, ଥାଳରେ, ଥିର ପାଣିରେ,
ଦା'ରେ, ଦୋଳିରେ, ଧମକରେ, ଧ୍ୟାନରେ, ନାଳରେ, ନବାଣରେ
ପଦ୍ମରେ, ପଶ୍ଚିମରେ, ଫାଙ୍କା କ୍ଷେତରେ, ଫଳରେ,

ବଂଶୀରେ, ବିବାଦରେ, କେଶରରେ, ଭସ୍ମରେ,
ମେଘରେ, ମନ୍ଦରରେ, ଯୋନିରେ, ଯାତ୍ରାରେ,
ରଥରେ, ରେରେକାରରେ, ଲୋଭରେ, ଲାଭରେ,
ବୃହସ୍ପତି ଓ ବେଶ୍ୟା, ଶାନ୍ତି, ଶୋକ
ସବୁଠି, ସମସ୍ତଙ୍କଠି, ମନ୍ତ୍ର, ମନ୍ତ୍ର,
ସୋଦରଠି, ସମୁଦ୍ରଠି, ଷୋଳକଳା ଓ ସ୍ରଷ୍ଟା;
ହୋମରେ, ହନନରେ, ଷଣ୍ଢରେ, କ୍ଷମାରେ
ସବୁଠି ମନ୍ତ୍ର
ଫୁଲରେ ଓ କୁଷ୍ଠରୋଗୀର ଘା'ରେ ।

॥ ସାତ ॥

ଅନ୍ଧ ମନ୍ତ୍ରମାନ୍ଥ !
ଉଡୁଥା', ବୁଲୁଥା', ବୁଲୁଥା',
କିଛି ଦେଖ୍‌ନା, ଦେଖ୍‌ନା, ଦେଖ୍‌ନା,
ଯାହା ପାରୁଛୁ ଶୁଣୁ ପୂରାଇ ଗ୍ଲେମିନେ', ଗ୍ଲେମିନେ',
ହିସାବ ହେବ ପରେ
ତୋ' ମୁଖର ବର୍ଣ୍ଣବୋଧ, ବ୍ୟାକରଣ, ମାନସାଙ୍କ
ପୁଣି ଶିଶୁ ପୃଥିବୀ ଶିଖୁଥିଲାବେଳେ ।



# କାଗଜ ଡଙ୍ଗାର ଶୋକ

ସରୋଜରଂଜନ ମହାନ୍ତି



ଶ୍ରାବଣ ମେଘକୁ କିଏ
କିପରି ତା ବିଶ୍ୱାସ କରିବ ? କେତେବେଳେ ସେ ହଠାତ୍
ଅଦିନ କୁଣିଆ ଭଳି
ସେ ଆସି ପହଞ୍ଚିବ ତୁମ ବଗିଚାରେ ଓ ତୁମର
ଅସତର୍କ ମୁହୂର୍ତ୍ତର ସୁଯୋଗ ନେଇ ସେ
ଅଗଣାରେ ପହଞ୍ଚିବ । ଓ ପୁନଶ୍ଚ
ଘରର ଝରକା ଠେଲି ପ୍ରବେଶିବ
ଓଦା କରି ଯିବ ତୁମ ବହିପତ୍ର,
            ବିଛଣା ଓ କବିତାର ପାଣ୍ଡୁଲିପି
            ମୁଣ୍ଡର ଲିପିକୁ
            ଏବଂ ସର୍ବୋପରି
            ତୁମେ ନିଜେ ବାଦ୍ ପଡ଼ିବ ନା ॥

ତୁମେ ଭୁଲି ଆସୁଥିବା କ୍ଷତର ସ୍ମୃତିକୁ
ଓଟାରି-ଉଖାରି ପୁଣି
            ସେ ମନେପକାଇ ଦେବ,
ଲୁଟି ନେଇଯିବ ତୁମ ସହଜ ସ୍ୱଭାବକୁ
ଓ ତୁମେ ଦରିଦ୍ର ହୋଇ ଆଉଥରେ
            ଖୋଜୁଥିବ ବିଗତ ଦିନର
            ହଜିଥିବା ହସିଲା ବିଭବ ॥

ଶ୍ରାବଣ ତୁମକୁ
            ଆଉ ଥରେ ଦେଇଯିବ,
ହାରିବାର ଯନ୍ତ୍ରଣା ଓ
            ଆହତ ପୌରୁଷ

ଡାକ ଆଣି
କଲମ ମୁନରେ ତୁମ
ଫୁଲ କରାଇବ ପୁଣି
ଭୁଲିଯାଇଥିବା ଦୁଃଖ
ଅବଶିଷ୍ଟ କାହାଣୀର ଶୋକର ଗଳ୍ପାଂଶ, ଯାହା
ଅସମ୍ପୂର୍ଣ୍ଣ ତଥାପି ରହିବ ॥

ଶ୍ରାବଣ ମେଘରେ ଭଳି
ତା'ର ଗୁଞ୍ଜନକୁ
ଅପଣାର ପଣତ କାନିରେ
ଭୋଳି ବାନ୍ଧିବାକୁ ତୁମ ପ୍ରିୟ ବାନ୍ଧବୀଙ୍କ
ବିଫଳ ପ୍ରୟାସ କଥା
ସେ ମନେପକାଇ ଦେବ
ଏବଂ ତୁମେ
ତାଙ୍କୁ କେନ୍ଦ୍ର କରି ଫଗୁଣର
ଚନ୍ଦ୍ର ଅଙ୍କିବାକୁ ଚେଷ୍ଟା
କଲାବେଳେ
ତୁମ ତୂଳୀ ଅଙ୍କୁଥିବ
କାକ୍‌ଟସର ଛବି ॥

ଆଦ୍ୟ ଆଷାଢ଼ର ବର୍ଷା
ରାମଗିରି-ବିରହର ଋତୁ ତ
ଶ୍ରାବଣ
ନିହତ ପୀଡ଼ାର ଋତୁ
କ୍ଷତ ଓ କ୍ଷତର ଋତୁ
ଶକ୍ତ ଓ ରକ୍ତାକ୍ତ ହେବାର ଋତୁ । ଏବଂ
ଶ୍ରାବଣର ସ୍ୱର :
ରାମଗିରିମାନଙ୍କରେ ଖେଳୁଥିବା
ପୁଞ୍ଜୀଭୂତ ବେଦନାର
ସମ୍ମିଳିତ ଏକ ଦୀର୍ଘଶ୍ୱାସ ॥

॥ ୧୪୮ ॥

ଶ୍ରାବଣ ଆସିବ ଏବଂ
ସିଏ ପୁଣି ବଦା ହୋଇଯିବ
ନିଷ୍ଠୁର ପ୍ରେମିକା ଭଳି
ଆପେ ଆପେ,
ଦିଗ୍‌ବିଜୟୀ ଗର୍ବ ନେଇ; କିନ୍ତୁ
ଉପହାର ଦେଇଯିବ ଶୋକ ।
ତା’ ପ୍ରସ୍ଥାନ ପରେ
କାଗଜ ଡ଼ଙ୍ଗାଟି ଭଳି
ତୁମେ ଭାସୁଥିବ ତା’ର
ଶୋକର ସୁଅରେ ॥



# ପଦ୍ମପୋଖରୀରେ ଗଳା ଗୋଡ଼ ଖସି

ପ୍ରହରାଜ ସତ୍ୟନାରାୟଣ ନନ୍ଦ

●

ପଦ୍ମ ପୋଖରୀରେ ଗଳା ଗୋଡ଼ ଖସି
ପହଁରି ନ ଜାଣି
ଫୁଲ ତୋଳିବାର କିଛି ଅର୍ଥ ଅଛି
ଲୋକେ କି ବୁଝିବେ କେବେ
ଫୁଲ ତୋଳା ହୁଏ କାହାପାଇଁ
ସମସ୍ତେ କହିବେ ଭୁଲ୍
            ମୋର ତା'ର
            ଅଥବା ପଦ୍ମର
ଦୁର୍ଘଟଣା ଭୁଲ୍ ନୁହେଁ ସବୁବେଳେ ଭୁଲ୍ ହୃଦୟର

ମୁଁ ତେଣୁ ଭୟରେ ଦୂରେଁ ଶ୍ମଶାନରେ
                    ସିଏ ତ ଆସିବ
କିଆ ବଣ ପାରି ହୋଇ ତା' ଦରଦୀ ଛାତଙ୍କ କାନ୍ଧରେ
ଏ ପୃଥ୍ୱୀ ଲଭିବା ଆଗୁଁ କୋକେଇରୁ ଅଲତାମଣ୍ଡିତ
ତା ଦୁଇ ତଳିପା କ୍ରମେ ଧ୍ୱଂସିବ
                    ···ପଦ୍ମଫୁଲ ପରି
ବାଳଟୁଙ୍କ ଭୂରୁ ଗୃପିଧରି
ମୁଁ ଧାଇଁବ ଝୁଣ୍ଟି ଝୁଣ୍ଟି ହାଡ଼ ଓ ଖପୁରୀ
କୋଶଳ ଗୁଇରେ ବସି ତା'ର ସାତ ଭାଇ
ଶୁଣୁଥିବେ କଥାମୃତ ପର ଜଗତର
ବ୍ରାହ୍ମଣ ଉଠାଇ ନେବ କାଠ ଝଙ୍କି ବଳଣା ଶ୍ୱଦର
ତା' କରୁଣ ଆଖି ଆକାଶକୁ ସାମ୍ନା ହୋଇ ରହିଥିବ
                        ତା' ନୀଳ ଡୋଳାରେ ସୂର୍ଯ୍ୟ
                        ରକ୍ତ ପଦ୍ମ ପରି
                        ମୁହୂର୍ତ୍ତେ ରହିବ ସ୍ଥିର
ତା' ଓଠରେ ଢଳ ନା ନକ୍ଷତ୍ର
ଅବା ଭଗ୍ନ ଚନ୍ଦ୍ର ତଳେ
ବନ୍ଦୁଟିଏ

ଅନ୍ତିମ ସ୍ନେହର
ଚହ୍ନ ରହ୍ନ ନଲ୍‌ଥିବ ମୋ ଭିତରେ
ମ୍ଳାନ ଓ ଅନ୍ଧାର
ପୋଖରୀରେ ଘାଟ ନାହିଁ
କଏ ଜାଣେ ସେ ଗଲା କମ୍ପାଇଁ
ଅଗଣାରେ 'କୃ'ଶଅନା 'ଅ'ଶୋକ 'ମ'ନ୍ଦାର
ଥାଉଁ ଥାଉଁ ପଦ୍ମ ଭୋଳବାର
କିଛି ହେଲେ ଅର୍ଥ ଅଛି
(ଲୋକେ କ ବୁଝିବେ ପଦ୍ମ ପାଣଠୁଁ ସୁନ୍ଦର !)

ଝାପ୍‌ସା ହୁଏ ବଗ୍‌ବଲୟ ତା' ଶୀତଳ ଦେହ ଶୋଇ ରହେ
ଆକାଶକୁ ସାମ୍ନା ହୋଇ ଦ୍ୱିଧାହୀନ ମନରେ କେବଳ
ମୁଁ ସ୍ୱୀକାର କରେ ସତ୍ୟ ଅସ୍ୱୀକାର କଲେ ବ ଯାହାକୁ
ସେ ପ୍ରତିପାଦିତ ହୁଏ ଆପେ ଆପେ ।
ତା'ର ସାତଭାଇ
କସ୍ତୁର ଦେହସ୍ୱ ପର ଘୂରୁଥାନ୍ତି ମୋର ଗୃହପାଖେ ।

ମୁଠା ମୁଠା ଝୁଣା ଫିଙ୍ଗି ମୁଁ ଖୋଜଇ
ନାଲି ଅଙ୍ଗାରରୁ
ପୁଣି ଦେଖି ହେବ ଛବି
ମୂର୍ତ୍ତି ବା ପଦ୍ମର
ସେ କାଳେ ସାଇତି ଥିବ
କେଉଁ ମୃତ୍ତି କେଉଁ ଉପହାର
କୂଢ଼ କୂଢ଼ ପାଉଁଶରୁ ମୁଁ ଖୋଜଇ ଯନ୍ତ୍ରଣା ମାଟିର ।

ଦୁର୍ଘଟଣା ଭୁଲ୍ ନୁହେଁ ।
ସବୁ ଭୁଲ୍ ନୁହେଁ ହୃଦୟର ।
କିଛି ବା ତୁମର ମୋର
ଆଉ କିଛି ବସ୍ତୁରପଢର
କିଛି ଭୁଲ୍ ବ୍ରାହ୍ମଣର କିଛି ପୁଣି ସାତ ଭାଇଙ୍କର
ଗାଆଁ ଲୋକେ କହୁଥାନ୍ତି ବେଶୀ ଭୁଲ୍ ପଦ୍ମ ପୋଖରୀର ।



# ନଦୀ ଏକ, ଶତଦ୍ରୁ ଅନେକ

ରାଜେଂଦ୍ରକିଶୋର ପଂଡା



ଥରେ 'ନଦୀ' ଡାକଦେଲେ
ପୃଥିବୀର ସବୁ ନଦୀ
ପହଁଚି ଆସଂତି ମୋ' ଆଡ଼କୁ ।
ଆଉ ଥରେ 'ନଦୀ' ଡାକଦେଲେ
ମୋ ଭିତରର ସବୁ ନଦୀ
ଲମ୍ଫ କୁଦ ଦେଇ
ଦେହର ଦଶଦ୍ୱାର ଖୋଲି ପକାଇ
ଜାନୁ ଚିରି ହୃଦୟ ମେଲି
ପହଁଚି ଯାଆଂତି ଦଶଦିଗକୁ ।

ଥରେ ହେଲେ
କୌଣସି ନଦୀ ମୋତେ ଡାକିଲେ ନାହିଁ
ନାଆଁ ଧରି ।
ଜାଣିପାରିଲି ନାହିଁ ମୁଁ କିଏ ସମୁଦ୍ର
ନା, ପର୍ବତ ।
ନା, ନଦୀ !
ତା ବୋଲି କ'ଣ ମୁଁ ଭୁଲିଯିବି ?
ନା ଶତଦ୍ରୁ ଡାକିବି ନା ଶତଲେଜ୍
ନା ଗଂଗା ବୋଲିବି ନା ଗାଂଗୀ
ମୁଁ ଭଟେ 'ନଦୀ' 'ନଦୀ' 'ନଦୀ' ବୋଲି
ଡାକୁଥିବି ॥



# ଯେଉଁଠାରେ ନୀରବତା ନୀରବ

ରାଜେନ୍ଦ୍ରକିଶୋର ପଣ୍ଡା



ମୋର ସ୍ୱର ଶୁଣିବା ଆଗରୁ
ସମସ୍ତେ ଶୁଣୁଥିଲେ ନୀରବତା
ଏବଂ ସାରା କବିତାରେ ନୀରବତାର
ଆବୃତ୍ତି ମୁଁ କରିବି କରିବି କରିବି ।
ନୀରବତା ଗଢ଼ିଦିଏ ବିଚିତ୍ର ଶଯ୍ୟାସଂଗୀ ।
ଫାଶିପାଇଥିବା ଲୋକ ନୀରବତାରେ ଉଡ଼ିପାରେ
ଦୂରତ୍ୱକୁ ନ ଯାଇ ।
କୁଆଁ କୁଆଁ କ'ଣ ନୀରବତାର ଧର୍ଷଣ ?
ନୀରବତାର ପ୍ରଥମ ଝଲକ ପାଇଥିଲି ମୁଁ
ଯେତେବେଳେ ବନମାଳୀ ପଂଡ଼ା
ମୋର ପିତାମହ
କଥାରେ କଥାରେ ଯମକୁ ଇସ୍ତଫା ଦିଆଇ
ଯମ ଗାଦି ମାଡ଼ିବସିଲେ : "ନୀରବତା"
ବୋଲି ଲେଖାଥିଲା ତାଂକର ସଦାମୁଖର ଜିଭରେ,
ମୁଁ ପଢ଼ିଛି । ସଦା ନୀରବ ବାପା କଂଠରୁ
ମନା କରଂଛ । ମାଲିକ୍ !
ଖୋଲାବଜାରରେ ନୀରବତା ମିଳୁଚ ଯଦି ମିଳୁ
ମୋର କଂଠରୁ ପାରିବାରିକ ଗୁମର ତାହା ।
ମୋର ତ ପ୍ରିୟ ଝୋମୋକୋମ୍‌ରେ
ନୀରବତା । ଏପରିକି ଉପରିସ୍ଥ କର୍ତ୍ତା
ସେଇକଥା ଲେଖିଛନ୍ତି ମୋର ଚରିତ୍ର ପଂଜିକାରେ ।
ହେ ଭଗବାନ୍ ! ଜଗର୍ଣ୍ଟ୍‌ର ଖାଦ୍ୟନଗରରେ
କେହି କଥା କହିପାରେ
ଯେଉଁଠି ନୀରବତା ଏକ ଭୟାନକ
କଳା ଟୋଟମ୍ ପରି ବିଜେ କରିଛି ?
କାଳିଦାସ ପରି ଗୋଟିଏ ଆଗୁଂଠି ଦେଖାଇ

॥ ୧୫୭ ॥

ନୀରବତାର ଉତ୍ତର ଦେଇ ପାରିଥାନ୍ତି ମୁଁ ତାକୁ
କିନ୍ତୁ ସେ ତ ମୋତେ ଦୁଇଟି ଆଙ୍ଗୁଠି ଦେଖାଇ
ପ୍ରଶ୍ନ ପଚାରି ନାହିଁ, କାରଣ
ତା'ର ଆଙ୍ଗୁଠିଇ ନାହିଁ !
ଅଛି, ବର୍ଣ୍ଣମାଳାରେ ନୀରବତାର ପରିଭୂ
ଏକ ଅକ୍ଷର ଅଛି, ବର୍ଣ୍ଣାଳୀରେ
ନୀରବତାର ଅଷ୍ଟମ ରଙ୍ଗ ଭାଗ୍ୟବାନ୍ ଲୋକ
ଦେଖି ପାରନ୍ତି । ସ୍ୱରଲିପିରେ ନୀରବତାର
ଅଷ୍ଟମ ସ୍ୱର ସଂଗୀତାୟିତ କରିପାରନ୍ତି ।
ଈଶ୍ୱର ଯେତେବେଳେ ସୃଷ୍ଟି କଲେ,
ନାସ୍ତି ଓ ନୀରବତା ଦୁଇଟି ପଦାର୍ଥ
ବାହାରିଲେ ଏବଂ ନୀରବତାଠାରୁ
ନାସ୍ତିବଦ୍ୱେଷୀ ଆଉ କେହି ନାହିଁ ।
ତଥାପି ନୀରବତା ଥାଏ ପ୍ରମିଳା ରାଜ୍ୟରେ
ପଦ ମଝିରେ, ଅକ୍ଷର ମଝିରେ
ଧାଡ଼ି ମଝିରେ କନ୍‌ଭେୟର୍-ବେଲ୍‌ଟରେ...
ନୀରବତାର ବୀଜ ଭିତରେ
ମୁଁ ଥରେ ପଶିଥିଲି
ସେଇଠି ମୁଁ ଶବ୍ଦକୁ ସାକ୍ଷାତ କଲି
ନାଦବ୍ରହ୍ମକୁ ସାକ୍ଷାତ କଲି ।
ଆମେ କିଏ ଶବ୍ଦ କରିବାକୁ
ନେପଥ୍ୟରୁ ଶବ୍ଦ ଆସେ, ମାଲିକ୍ !
ତୁମେ କ'ଣ ଭେଂଟ୍ରିଲକ୍ୱିଷ୍ଟ୍ ?
ଶବ୍ଦ ଆଉ ନୀରବତା ଯାଆଁଳା।
ଦୁଇ ମିନିଟ ନୀରବତା ମୃତ୍ୟୁ ପାଇଁ
ଯେମିତି ଯଥେଷ୍ଟ, ଜନ୍ମପାଇଁ
ସେମିତି ପ୍ରତ୍ୟାଶିତ ।
ମଲ ଛୁଆମାନଙ୍କର କାନ୍ଦ କରୁଣତମ ।
କେବେ
କେବେ ଭାରତବର୍ଷ ଫୁଟାଇବ ନୀରବତା-ବୋମା ?

କେବେ ପ୍ରତ୍ୟେକ ବିଧାନସଭାର ବୈଠକ ଘରେ
ମଂଗ୍ଳୁରୁଢ଼ ହେବ ଅଂଗୁଳି ଜାକ ପାଟି ବନ୍ଦ କରିଥିବା
ମାଂକଡ଼ ?
କେବେ ବାହାରିବ 'ଷ୍ଟେଟ୍‌ସମ୍ୟାନ୍' କାଗଜରେ
ଯେ ଅମୁକ ନେତା ଗୁରୁତର ନୀରବତାରେ ଆକ୍ରାନ୍ତ ହୋଇ
ହାସପାତାଳରେ ଚିକିତ୍ସାଧୀନ ?
ଏବଂ ନୀରବତାରେ କିଏ ମୃତ୍ୟୁ ନାହିଁ ??
ନାଁ, ମୁଁ କହୁନାହିଁ ଏପେଣ୍ଡିକ୍ସ ରୋଗର କଥା
ବା ଗଳା ପଡ଼ିଯିବା କଥା
ସୁଆଂଗରେ ଯେଉଁଭଳି ରଜାର ଗଳା ପଡ଼ିଗଲା
ଯେତେବେଳେ ସେ ମଂଚର ରଣାଂଗନରେ
ଶତ୍ରୁଙ୍କୁ ରେରେକାର କରୁଥିଲା...
ସେ କଥା ଭିନେ...
ଯେବେ ମୁଁ ଶବର ମଂଜ ଭିତରକୁ ପଶିଥିଲି
ସେଇଠି ନୀରବତାର ଆତ୍ମାକୁ
ଦେଖିଲି ପ୍ରାୟେ ଅନୁଭବ କଲି ।
ନୀରବତାକୁ ଚିହ୍ନି ପାରିଲେ
ନଜରୁଲ୍ ଇସଲାମ୍ ପରି ସ୍ଥିତପ୍ରଜ୍ଞ ହୋଇ ହୁଏ
ଓସ୍ତାଦ୍ ବନି
ନୀରବତାର ସଂଗୀତ-ସାଧନା ଗଢ଼ିହୁଏ
ନା, ମୁଁ ଏ ପର୍ଯ୍ୟନ୍ତ ଚିହ୍ନି ପାରିନ...ଚିହ୍ନିବି...
ପ୍ରତିଦିନ ମୋର ପଂଜରା କବାଟ ଖୋଲି •
ମୋର ମୁଣ୍ଡକୁ ତା ଭିତରକୁ ପଶାଉଛି
ଏବଂ ଭିତରେ ଥିବା ଅଦୃଶ୍ୟ ଶୁକପକ୍ଷୀକୁ
ଶିଖାଉଛି ନୀରବତା : ରେ ଶୁକପକ୍ଷୀ !
ରେ ଶୁକପକ୍ଷୀ !
ନୀରବତାର ପକ୍ଷୀ ଜନ୍ମରୁ, ସବୁ ଜନ୍ମରୁ
ପାରିକରେ ।
ଏବଂ ନୀରବତା କ'ଣ, ସେ ପଶ୍ନରେ
ମାଲିକ୍ ! ନୀରବତା କ'ଣ ବୋଲି ସେ

ପଶ୍ଚରେ । ସବୁ ପ୍ରଶ୍ନର ଉତ୍ତର
ନୀରବତା । ସ୍ୱଚ୍ଛ ଶୁଦ୍ଧ ନୀରବତା ।
ସେଦିନ ମୁଁ 'ଷ୍ଟିଲ୍ ଲାଇଫ୍' ଚିତ୍ର ପ୍ରଦର୍ଶନୀକୁ
ଯାଇଥିଲି । ପ୍ରତ୍ୟେକ ଚିତ୍ର
ଫୁସ୍‌ଫୁସ୍ ଫିଟାଇ ଚିତ୍କାର କରୁଥିବାର
ମୁଁ ଶୁଣିଛି । ଘରେ ବାହାରେ
ଅଫିସରେ ରେଲଗାଡ଼ିରେ ବସ୍‌ରେ ରାସ୍ତାରେ
ଏଠାରେ ସେଠାରେ
ମୁଁ ତଥାକଥିତ 'ନୀରବ' ଲୋକମାନଙ୍କୁ
ଏପରିକି ମୂକମାନଙ୍କୁ ଦେଖେ
କାହିଁ ସେମିତି ନୀରବତା କାହିଁ, ମାଲିକ୍ !
ସତ କହୁଛି, ସେମାନଙ୍କର ଧୂସର ମସ୍ତିଷ୍କର
ପ୍ରତିଟି କଣିକାରେ ବଡ଼ ବଡ଼ ଶବ୍ଦ ସବୁ
ଝନ୍‌ମନ୍ ଫୁଟୁଥିବାର ମୁଁ ଶୁଣେ ।
ସେଠାରେ ଶବ୍ଦ ଅପାତତଃ ନୀରବ
ଆଉ କେଉଁଠି ନୀରବତା ସଶବ୍ଦ ।
ମୁଁ ଟେଲିଫୋନ୍ ଉଠାଏ
ଡାଏଲ କରେ ଈଶ୍ୱରଙ୍କର ତାଲିକା ବହିର୍ଭୂତ ନଂବର
ଏବଂ ମାଉଥ୍‌ପିସ୍‌ରେ ଶୁଣିବାଏ
ଏକ ଜୀବନକାଳର ନୀରବତା
ଓଃ କେତେଟା ଜୀବନ ମୋତେ ବଂଚିବାକୁ ହେବ, ମାଲିକ୍,
ଜାଣିବାପାଇଁ କି ପ୍ରକାର ସେ ଶୁଦ୍ଧ ନୀରବତା ?
କେଉଁଠି ଶବ୍ଦ ସଶବ୍ଦ···କେଉଁଠି ଶବ୍ଦ ନୀରବ···
ଆଉ କେଉଁଠି ନୀରବତା ସଶବ୍ଦ ।
କେଉଁଠି ସେ ସ୍ୱଚ୍ଛ ଅବସ୍ଥା ହେ ମାଲିକ୍,
କିପରି ସେ ଅବସ୍ଥା ହେ ମାଲିକ୍
ଯେଉଁଠାରେ ନୀରବ ନୀରବତା
ଯେଉଁଠାରେ ନୀରବତା ନୀରବ···
ଯେଉଁଠାରେ ନୀରବତା ନୀରବ···
ଯେଉଁଠାରେ ନୀରବତା ନୀରବ······?



# ନାୟିକା ଧରିତ୍ରୀ

ହରିହର ମିଶ୍ର



ନୀଳ ଶୃଙ୍ଗଟି ପାଦତଳେ ବର୍ତ୍ତମାନ
ତଣ୍ଟିତଳେ ମୁଣ୍ଡଟେକେ
ହର୍ଷବିହଗ ପାର୍ଥନା ବର୍ତ୍ତମାନ
ନୀରବତାର ସ୍ତବ୍ଧତାରେ
ସଂଜ୍ଞାପିତ ପଞ୍ଜରା ତନ୍ତ୍ରୀରେ
ଜଗନ୍ନାଥ ବଚନ ଅନ୍ଧାର
ନାରୀ ହୋଇ ପୁରୁଷ ଭିତରେ
ଓ ପୁରୁଷୋତ୍ତମ ନାରୀର ଭିତରେ
ତୁମ ପାରିବାରିକ ଷେଗରେ
ମୋର ଆନନ୍ଦରେ
ନାୟିକା ନିଜେ ଅନ୍ତରାଳେ
ସ୍ୱପ୍ନ ରୂପାୟିତ
ତମଦ୍ୱାରା, ତମଠାରେ, ତମପାଇଁ
ସବୁକଥା ମନେଅଛି ନାୟିକାର
ଅବିକଳ ମେକ୍-ଅପ୍‌ ନିଏ ସେଦିନର
ତୃର୍ଷା ଓ ଓଢ଼ଣା ତଳେ
ହସ ତା'ର ଅନିର୍ଦ୍ଦିଷ୍ଟ ସ୍ଥାନ କାଳ ପାଶେ
ଅଜସ୍ର ତାରକାରେ
ଯେତେବେଳେ ଅନ୍ୱେଷା ଗଂଭୀର
ଓ ଗର୍ଜୁଥାଏ ବଙ୍ଗୋପସାଗର
ନାୟିକା ମଞ୍ଚରେ ଆବିର୍ଭୂତା
ହଠାତ୍‌ ସବୁ ତଳ ଉପର,
ଉପର ତଳ ଅସ୍ତ ବ୍ୟସ୍ତ,
ଅପେକ୍ଷାର ଦିନ ଓ ତାରିଖ
ମୁକ୍ତି ଉତ୍ସବର ଅପରାହ୍ନ ଲଗ୍ନ ନିର୍ଦ୍ଦିଷ୍ଟ
ଅସମୟେ ଅସହାୟ କୋଇଲି

॥ ୧୫୭ ॥

ସଦର ସଭାରେ ପ୍ରବଳ ଭେକ
ମଣ୍ଡନ ସ୍ତ୍ରାଇଙ୍କ ଭିତରେ
ଶୋଷଯାଞ୍ଚା ଶତ ମୁଖଙ୍କର
ଯେଉଁଠି ବ୍ୟସ୍ତ ଡାମରକାଉ ପର୍ଯ୍ୟନ୍ତ
ଗହଳି ଝଂଗ···ଯାଅ କାମ କର
ସପ୍ତଦନ ବୃଷ୍ଟିରୁ
ତୋତେ ହିଁ ତୁ, ରକ୍ଷାକର
ଉଠୁ ଗୋବର୍ଦ୍ଧନ !
ବଞ୍ଚିଲ ବଂଶଧର !
ଶୁଣ, ଶୁନଃଶେପ,
ବଳି ପଡ଼ିବା ଆଗରୁ
ସଗ୍ଧର ଯାଜ୍ଞିକ ଅମ୍ବୃଷଣଙ୍କୁ
ଯେଉଁ ସ୍ୱପ୍ନ, ଯେଉଁ ଆକର୍ଷଣ
ଏ ଜୀବନର, ପାର୍ଶ୍ୱ ଜଗତର
ଅଭାବ ପୂରଣ କରୁଥିବା ଫୁଲଗୁଡ଼ିକର
କ'ଣ ହେବ କ'ଣ ହେବ
କ'ଣ ହେବ ସେ ସମସ୍ତ
ତୁମ ହାତେ
ଅଜସ୍ର ପ୍ରତ୍ୟାଖ୍ୟାନ ସତ୍ତ୍ୱେ
ଶିଶୁଟିର ସକଳିତ ରକ୍ତପାଠ
ମନ୍ଦାର ମାଳର ?
ନାସ୍ତିକାର କାନ୍ଧରେ ଢନୋଟି ଫୁଲ,
ନେଣରେ ପଙ୍କ,
ସ୍ତନରେ ଶୃଙ୍ଗ···ଜନ୍ମେ ଜତମ୍ବର···
ବେଲୁନ୍ ଭିତରେ ନାସ୍ତିକା ଉଡ଼ନ୍ତା ଯାନରେ
ଜନସ୍ଥାନ ମରୁଭୂମିରେ ଏକା ଏକା···ନାସ୍ତିକା
ବିସ୍ଫୋରିତ ମୁଣ୍ଡ ସବୁ ରକ୍ତମାଂସ ଅସ୍ଥି ପରମାଣୁ
ଆବିଷ୍କୃତ ନୂତନ ଶ୍ରୀକ୍ଷେତ୍ର ।



# ସାହାଡ଼ା ସୁଂଦରୀ

ଶ୍ରୀମତୀ ପ୍ରତିଭା ଶତପଥୀ



ମୁଁ କ'ଣ ! ମୋ'ଠୁଁ ବି ଅପାରଗ
ଗଛଲତା, ଆକାଶ ପବନ
ସଞ୍ଜର ବିବିଧ ବର୍ଣ୍ଣ
ସକାଳର ସହାସ୍ୟ ବଦନ
କାହାର ବା ସାଧ୍ୟ ଅଛି ଶାନ୍ତ କରିବ ତୋ
ସନସନ ଶୂନ୍ୟତାରୁ ଜାତ
ଦୁର୍ବୋଧ ବ୍ୟଥାକୁ ?
ମୁଁ ବା କୋଉ ଭଦ୍ରଲୋକ !
ତୋର ଆଖି ଦୁରୁଗ୍ଣିଆ ରୂପ,
ହସେ, କାଂଦେ, କଥା କହେ
ଇସ୍ତ୍ରୀ ଶାଢ଼ୀ ପିଂଧି
ପେନସିଲ୍‌ରେ ଭୂରୁଟାଣି ବୁଲିଯାଏ
ବଜାର କରେ, ଘରକୁ ସଜାଡ଼େ
ଏକୁଟିଆ ବେଳେ ଯାହା ବିପନ୍ନତା ତୋ'ର
ମୋ ଆଖିରେ ପଡ଼େ ।
ମୁଁ ସିନା ଖରାରେ ପୋଡ଼େ
ବର୍ଷା ଖାଏ, ଶୀତ ସହେ
ସାହାଡ଼ା ଗଛର ଅପରିଚ୍ଛନ୍ନ ଗଣ୍ଡି ଭିତରେ
ଲୁଚିଥିବା ହେ ସୁନ୍ଦରୀ !
ତୋର ଅସ୍ଥିରତାରେ ମୋତେ ଆଉ ଦୋହଲାଇ ଦେ'ନା
କେତେ ପାର୍ବଣର ମୁଖର ଛବି
ତୋର ଅବସନ୍ନ, ବିପନ୍ନତା ତଳେ ହଜିଯାଇଛି,
ତୁ କେମିତି ବୁଝିପାରୁନୁ ଯେ
ଆମପାଇଁ ଆଉ ଅଧିକ କିଛି ନାହିଁ ।

॥ ୧୬୯ ॥

ଆମ କାନକୁ ଶୁଭିବ ନାହିଁ କେବେ
ଦିବ୍ୟରଥର ଘର୍ଘର ଘୋଷ,
ସ୍ୱାଭାବିକ ଭୁଲିଯାଇଥିବା ସମୟର ଖାଲି
ବର୍ଷାଟୋପା ଭଳି
ଟପ୍ ଟପ୍ ଅନୁଚ୍ଚ ପାଦଶବ୍ଦ ।
ତୁ କ'ଣ ଦିପହରର ଘାସପତର ଉପରେ
କାକରର ଆବେଗମସୃଣ ସ୍ୱେଦକୁ
ଖୋଜି ବୁଲୁଛୁ ?
ସେ ତ ସୂର୍ଯ୍ୟର ହାତ ସଫେଇ ।
ଜଣୋଷ୍ଟର ନିଷ୍ପାପ ଆଖିରେ
ଉଜ୍ଜ୍ୱଳ ପଡ଼ୁଥିବା ରଂଗିନ୍ ଭବିଷ୍ୟତ
କେବଳ ସ୍ୱପ୍ନଇ ।
ତୋ' ଆଗରୁ କେତେ କେତେ ଲୋକ
ଅସ୍ଥିର, ବ୍ୟାକୁଳ ଅନ୍ୱେଷଣରେ
କ'ଣ ବା ଖୋଜି ପାଇଲେ ?
ସମୟର ବିସ୍ତୃତ ଚଟାଣ ଉପରେ
ଓଦା ଓଦା ପାଦଚିହ୍ନମାନେ
କ୍ରମଶଃ ଲିଭିଲେ ।
କାହାକୁ କ'ଣ ପଚାରିବୁ ବୋଲି ଉଦ୍‌ବିଗ୍ନତା ?
ଭାଗ୍ୟ !
ଦ' ହାତପାପୁଲି ଟୋଲିରେ
ଧରିଥିବା କଂକଟିର ପରକୁ ଛୁଂଡେଇ ଦେଇ
ତା'ର କଳବଳ
କୌତୂହଳେ ଦେଖୁଥିବା ଦୂରଂତ ଶିଶୁଟି
ତୋର ଭାଗ୍ୟ,
ସିଏ ତୋର କାନ୍‌ଭାସ୍‌ରେ ଅଂକା
ଚମତ୍କାର ଲ୍ୟାଂଡ୍‌ସ୍କେପ ଉପରେ
ଢାଳିଦିଏ ବୋତଲେ କାଳି,
ତୋର ହାତଗଢ଼ା,
ରୂପବତୀ ପ୍ରତିମାର ଉଜ୍ଜ୍ୱଳ ମୁହଁରେ

ଝଲଫୁଲ୍ ନାସାତଳେ
ଟାଣିଦେଏ ଅଂଗାରରେ ଦ'ଗାରେ ଜଣ,
ଫୁଲକୁଂଡରେ ଛନଛନ ଗୋଲାପ ଡାଳର
ପ୍ରଥମ ଫୁଲକୁ
ଦଳିଦେଏ ଖିଆଲୀ ନଖରେ
(ଉଚ୍ଛ୍ୱସିତ ଆନଂଦରେ, ଜବଡ଼ ସ୍ନେହରେ !)
ସେଇ ତ ତୋର ଭାଗ୍ୟ
                    କି ଉତ୍ତର ଦେବ ?
ଅତଏବ ଆ—ଶୀତଳ ପବନରେ
ବହୁଫୁଲର ଦୂରାଗତ ବାସ୍ନାତଳେ
                    ଆଜିର ରାତରେ ,
ଶୋଇପଡ଼ ନିଶ୍ଚିଂତରେ ଘଡ଼ିଏ,
ଆପାତତଃ ମୁହୂର୍ତ୍ତିଟିଏ ଭୁଲିଯା'
ଯେ ତୁ ମୋ'ଠୁ ଭିନ୍ନ
                    ଆଉ କିଏ ।

